# ମହିମା ଧର୍ମ ଓ ଦର୍ଶନ



ଡକ୍ଟର କୃତ୍ତିବାସ ନାୟକ

ISBN NO. 81-87968-21-4

# ମହିମା ଧର୍ମ ଓ ଦର୍ଶନ

ରଚନା : ଡକ୍ଟର କୃତ୍ତିବାସ ନାୟକ

ପ୍ରକାଶକ **ଅଗ୍ରୁଣ ତଗ୍ରୁଣ**

ଆକାଶବାଣୀ ମାର୍ଗ, ଯୋରନ୍ଦା

ଢେଙ୍କାନାଳ-୭୫୯୦୧୪

ଫୋନ୍-୦୬୭୬୨/୨୩୯୦୬୩

ପ୍ରଥମ ପ୍ରକାଶ : ଜାନୁଆରୀ- ୨୦୦୬.

ଅକ୍ଷର ସଜ୍ଜା ଚନ୍ଦ୍ରଶେଖର ପ୍ରେସ୍,

କୁଞ୍ଜକାନ୍ତ, ଢେଙ୍କାନାଳ

ମୁଦ୍ରଣ ଜଗନ୍ନାଥ ପ୍ରେସ୍, କଟକ-୨

ମୂଲ୍ୟ ପଚାଶ ଟଙ୍କା ମାତ୍ର ।



**MAHIMA DHARMA O DARSHAN**

**Author : Dr. Kruttibas Nayak**

**Price : Rs. 50.00**



## ସତ୍ୟ ମହିମା ଧର୍ମ ସମାଜ

ମହିମା ଗାଦି, ଯୋରନ୍ଦା, ଢେଙ୍କାନାଳ

ତା - ୨୮.୧୨.୨୦୦୫.

# ଅଭିମତ

" ମହିମା ଧର୍ମ ଓ ଦର୍ଶନ" ପୁସ୍ତକର ପାଣ୍ଡୁଲିପି ପାଠକଲି । ସରଳ ଭାଷାରେ ସାଧାରଣ ଲୋକଙ୍କ ଉଦ୍ଦେଶ୍ୟରେ ରଚିତ ଏହି ପୁସ୍ତକଟି ପ୍ରତ୍ୟେକ ସ୍ତରର ଲୋକଙ୍କୁ ମହିମା ଧର୍ମ ଓ ଅଲେଖ ପ୍ରଭୁଙ୍କ ବିଷୟରେ ଏକ ସ୍ଥୂଳ ଧାରଣା ପ୍ରଦାନ କରିବ ବୋଲି ମୋର ବିଶ୍ୱାସ । ପ୍ରଭୁ ପ୍ରତ୍ୟେକ ଭକ୍ତ ହୃଦୟରେ ଧର୍ମ ପ୍ରତି ଶ୍ରଦ୍ଧା ଭାବ ଜାଗ୍ରତ କରାନ୍ତୁ । ପୁସ୍ତକଟିର ବହୁଳ ପ୍ରଚାର ଓ ପ୍ରସାର ଆଶା କରୁଛି ।

## ମହିମା ଅଲେଖ

ପବିତ୍ର ମୋହନ ବାବା

(ପବିତ୍ର ମୋହନ ବାବା)

ସଂପାଦକ



## କୌପୀନ ଧାରୀ ମହିମା ସମାଜ

ମହିମା ଗାଦି, ଯୋରନ୍ଦା, ଢେଙ୍କାନାଳ

ତା - ୨୮.୧୨.୨୦୦୫.

# ଅଭିମତ

" ମହିମା ଧର୍ମ ଓ ଦର୍ଶନ" ପୁସ୍ତକର ପାଣ୍ଡୁଲିପି ପାଠକଲି । ଅଲେଖ ମହିମା ଧର୍ମର ଦର୍ଶନ ତତ୍ୱ ଏବଂ ମହିମା ଧାମର ମହତ୍ୱକୁ ଲେଖକ ମହୋଦୟ ଅତି ସରଳ ଓ ବୋଧଗମ୍ୟ ଭାଷାରେ ରଚ଼ନା କରିଛନ୍ତି । ଲେଖକ ତାଙ୍କ ରଚ଼ନା ମାଧ୍ୟମରେ ଜନସାଧାରଣଙ୍କ ହୃଦୟରେ ମହିମା ଧର୍ମ ଓ ଧାମର ପରିଚ଼ୟ ପ୍ରବେଶ କରାଇବାରେ ସଫଳ ହୋଇଛନ୍ତି । ଆବଶ୍ୟକ ସଂଶୋଧନ ପାଇଁ ଲେଖକ ଆମର ସହାୟତା ନେଇଥିଲେ ।

ଯେଉଁ ଧର୍ମଟି ଓଡ଼ିଶାର କୋଟି କୋଟି ଜନତାଙ୍କ ହୃଦୟକୁ କିଣିପାରିଛି, ତାହା ଯୁଗ ଯୁଗ ଧରି ଭାରତର ସନାତନ ଧର୍ମକୁ ଗରିୟସୀ କରିଚ଼ାଲିବ । ଏଥିରେ ସନ୍ଦେହର ଅବକାଶ ନାହିଁ । ପୁସ୍ତକର ବହୁଳ ପ୍ରସାର ଓ ପ୍ରଚ଼ାର କାମନା କରୁଛୁ ।

## ଅଲେଖ ମହିମା ଶରଣଂ

ବାବା ରାଜ କିଶୋର ଦାସ

*(ବାବା ରାଜ କିଶୋର ଦାସ)*

*ସଭାପତି*

# ଦୁଇପଦ କହି ରଖେ

କୌଣସି ଗୋଟିଏ ମତବାଦ ବା ଚିନ୍ତାଧାରାକୁ ଯଦି ଗୋଟିଏ ଧର୍ମ ଭାବରେ ଗ୍ରହଣ କରାଯାଏ, ତେବେ ମହିମା ଧର୍ମ ହେଉଛି, ଓଡ଼ିଶାର ଏକମାତ୍ର ମୌଳିକ ଧର୍ମ । ଓଡ଼ିଶା ମାଟିରେ ଅନେକ ଧର୍ମର ଚେର ମାଡ଼ିଛି । କିନ୍ତୁ ମହିମା ଧର୍ମ ଏହି ପୁଣ୍ୟ ଭୂମିରେ ଅଙ୍କୁରିତ ହୋଇ ସମଗ୍ର ଭାରତବର୍ଷର କୋଣ ଅନୁକୋଣ ତଥା ନେପାଳ ପର୍ଯ୍ୟନ୍ତ ନିଜର ଚେରକୁ ବଢ଼ାଇ ପାରିଛି । ତ୍ୟାଗ ଓ ନିଷ୍ଠାର ପ୍ରତୀକ ଏହି ମହିମା ଧର୍ମ ବ୍ରହ୍ମ ଉପାସନାକୁ ଗୁରୁତ୍ୱ ଦିଏ । ଅନନ୍ତ, ଅକ୍ଷୟ ଓ ଅଲେଖ ପୁରୁଷ ପରଂବ୍ରହ୍ମ ହିଁ ମହିମା ସନ୍ନ୍ୟାସୀଙ୍କର ଏକମାତ୍ର ଆରାଧ୍ୟ । ଗୁରୁବାଦ ମହିମା ଧର୍ମରେ ପ୍ରଚଳନ ନାହିଁ । ମହିମା ଗୋସାଇଁ ହେଉଛନ୍ତି, ଏହି ଧର୍ମର ଆଦ୍ୟ ଓ ଶେଷଗୁରୁ ।

ବଲ୍କଳଧାରୀ ଓ କୌପୀନଧାରୀ ସନ୍ନ୍ୟାସୀମାନେ ନିଜସ୍ୱ ଶୈଳୀରେ ପରଂବ୍ରହ୍ମଙ୍କୁ ଆରାଧନା କରନ୍ତି । ତଥାପି ସେମାନଙ୍କର ଲକ୍ଷ୍ୟ ଏକ । ମହିମା ସ୍ୱାମୀଙ୍କୁ ସମସ୍ତେ ପ୍ରଭୁ ବୋଲି ମାନନ୍ତି ।

ମହିମା ଧର୍ମ ଓ ମହିମାଗାଦି ସଂପର୍କରେ ଅନେକ ଗୁଡ଼ିଏ ପୁସ୍ତକ ପ୍ରକାଶ ପାଇଛି । ତଥାପି ସାଧାରଣ ଜିଜ୍ଞାସୁ ମଣିଷଙ୍କ ପାଇଁ ମହିମାଧର୍ମ ଓ ଦର୍ଶନ ସଂପର୍କରେ ପୁସ୍ତକଟିର ଆବଶ୍ୟକତା ମୁଁ ମର୍ମେ ମର୍ମେ ଅନୁଭବ କଲି । ଯାହାକୁ ପାଇ ସାଧାରଣ ଲୋକ ଓ ମହିମାଧର୍ମୀ ଭକ୍ତମାନେ ମହିମା ଧର୍ମ ଓ ମହିମା ଗାଦି ସଂପର୍କରେ ମୋଟା ମୋଟି ଧାରଣା ଅର୍ଜନ କରିପାରିବେ । ଯେଉଁମାନେ କେବେ ମହିମାଗାଦିକୁ ଆସିବାର ସୁଯୋଗ ପାଇ ପାରୁ ନାହାନ୍ତି, ସେମାନେ ଦୂରରୁ ଥାଇ ଜାଣି ପାରିବେ ଓ ଦେଖି ପାରିବେ। ପୁସ୍ତକ ପ୍ରସ୍ତୁତ ଦିଗରେ ଅନେକ ବଂଧୁ ସହଯୋଗ କରିଛନ୍ତି । ସେମାନଙ୍କ ମଧ୍ୟରେ ଅଧ୍ୟାପକ ସଂକର୍ଷଣ ଜେନା ଓ ଦୁଇ ମଠରେ ଥିବା ବାବାମାନେ ଅଛନ୍ତି । ସେମାନଙ୍କ ନିକଟରେ ମୁଁ ଗଭୀର କୃତଜ୍ଞତା ଜଣାଉଛି ।

-ବିନୀତ ଲେଖକ-

# ସୂଚୀପତ୍ର



# ମହିମା ଧର୍ମର ସଂକ୍ଷିପ୍ତ ପରିଚୟ

କୌଣସି ଗୋଟିଏ ଧାର୍ମିକ ମତବାଦକୁ ଆଜିର ସାଧାରଣ ଲୋକେ ଧର୍ମ ବୋଲି ବୁଝିଥା'ନ୍ତି । କେହି କେହି କୁହନ୍ତି- ହିନ୍ଦୁ, ମୁସଲମାନ୍, ଖ୍ରୀଷ୍ଟିୟାନ୍, ବୌଦ୍ଧ, ଜୈନ ଓ ଇହୁଦି ହେଉଛି, ଗୋଟିଏ ଗୋଟିଏ ଧର୍ମ । ପ୍ରକୃତରେ କହିବାକୁ ଗଲେ , ଏଗୁଡ଼ିକ ହେଉଛି, ଗୋଟିଏ ଗୋଟିଏ ମତବାଦ । ଏହି ମତବାଦ ଗୁଡ଼ିକୁ ସ୍ୱୀକାର କରୁଥିବା ଗୋଷ୍ଠୀକୁ ଗୋଟିଏ ଗୋଟିଏ ସଂପ୍ରଦାୟ ବୋଲି କୁହାଯାଏ ।

ଧର୍ମ ସଂପର୍କରେ ଅନେକ କଥା ପୁରାଣ ଓ ଶାସ୍ତ୍ରମାନଙ୍କରେ ବୁଝାଇ ଦିଆ ଯାଇଛି । ଯାହା ପ୍ରାଣୀ ଜଗତର ମଙ୍ଗଳ ପାଇଁ କରାଯାଏ , ତାହା ହେଉଛି ; 'ମଣିଷର ଧର୍ମ' । ଜଳର ଧର୍ମ ହେଉଛି, ତଳକୁ ଗଡ଼ିଯିବା । ନିଆଁର ଧର୍ମ ହେଉଛି- ଉପରକୁ ଉଠିବା ଓ ଉତ୍ତାପଦାନ କରିବା, ପବନର ଧର୍ମ ହେଉଛି-ବହିବା ଓ ଶୀତଳତା ପ୍ରଦାନ କରିବା । ନଦୀର ଧର୍ମ ହେଉଛି ଜଳ ଦାନ କରିବା । ବୃକ୍ଷର ଧର୍ମ ହେଉଛି, ପତ୍ର-ଫୁଲ-ଫଳ ଓ ଛାୟା ପ୍ରଦାନ କରିବା ।

ମଣିଷ ଯାହାଠାରୁ ଉପକାର ପାଇଛି, ତାକୁ ଦେବତା ହିସାବରେ ମାନି ନେଇଛି । ତାକୁ ସନ୍ତୁଷ୍ଟ କରିବା ପାଇଁ ପୂଜା-ଆରାଧନା ମଧ୍ୟ କରି ଚାଲିଛି ।

ଠିକ୍ ସେହିପରି ଯାହା ଦ୍ୱାରା ତା'ର କ୍ଷତି ହେବାର ଜାଣିଛି, ତାକୁ ଭୂତ-ପ୍ରେତ, ସଇତାନ୍ ବା ଅସୁର ଭାବରେ ପରିଚିତ କରାଇଛି । ଆଉ କେତେକ ହିଂସ୍ର ପ୍ରାଣୀଙ୍କ ଦାଉରୁ ନିଜକୁ ରକ୍ଷା କରିବା ପାଇଁ ସେ ତାଂକୁ କେବଳ ଭୟରେ ପୂଜା କରି ଚାଲିଛି । ଯଥା- ବାଘ ଓ ସାପକୁ ପୂଜା କରିବାର ବିଧି ଆଜିଯାଏ ଆମ ସମାଜରେ ଚଳି ଆସୁଛି ।

ବିଜ୍ଞାନର ବିକାଶ ପୂର୍ବରୁ ଅସହାୟ ମଣିଷ ଅସଂଖ୍ୟ ଅନ୍ଧ ବିଶ୍ୱାସ ଓ କୁସଂସ୍କାରକୁ ଆପଣେଇ ନେଇ ଅଦୃଷ୍ଟ ଶକ୍ତି ନିକଟରେ ଆତ୍ମ ସମର୍ପଣ କରୁଥିଲା । ପ୍ରକୃତି ଓ ପରିବେଶ ତାକୁ ସୁହାଇଲେ, ସେ ରୋଗରୁ ମୁକ୍ତି ପାଉଥିଲା । ନଚେତ୍ ପ୍ରାଣ ହରାଉଥିଲା ।

କେତେଜଣ ଚତୁର ମଣିଷ ନିଜର ଉପସ୍ଥିତ ବୁଦ୍ଧିବଳରେ ଅନ୍ୟମାନଙ୍କ ଉପରେ ହୁକୁମ ଜାହିର କରି ଶକ୍ତିଶାଳୀ ହୋଇ ଯାଉଥିଲେ । ନିଜକୁ ନେତା ହିସାବରେ ପ୍ରତିଷ୍ଠା କରି ନେଉଥିଲେ ।

ଶିକ୍ଷା, ଦୀକ୍ଷା ଓ ଜ୍ଞାନର ଅଭାବରୁ ସରଳ ମଣିଷମାନେ ସେମାନଙ୍କୁ ଶ୍ରେଷ୍ଠ ମଣିଷ ବୋଲି ମନେ କରୁଥିଲେ । ଶିକ୍ଷାର ପ୍ରଚାର ଓ ପ୍ରସାର, ବିଜ୍ଞାନର ଅଗ୍ରଗତି ଓ ବିଭିନ୍ନ ଦେଶର ଆବିଷ୍କାର ତଥା ପରସ୍ପର ଆତ୍ମୀୟତା ଫଳରେ ମଣିଷ ସମାଜରେ ଭରି ରହିଥିବା କୁସଂସ୍କାର ଓ ଅନ୍ଧ ବିଶ୍ୱାସରେ ଭଙ୍ଗା ପଡ଼ିବା ଆରମ୍ଭ ହେଲା ।

କେତେଜଣ ମହାମନୀଷୀ, ନିଜର ଜ୍ଞାନ ଓ ଅଭିଜ୍ଞତାକୁ ପାଥେୟ କରି ସମାଜରେ ଚଳି ଆସୁଥିବା କୁସଂସ୍କାରକୁ ଦୂର କରିବାକୁ ଚେଷ୍ଟା ଚଳାଇଲେ । କେତେଜଣ ଚତୁର ମଣିଷ ତନ୍ତ୍ର, ମନ୍ତ୍ର ବା କେତେକ ସାଧନାର ଶକ୍ତି ବଳରେ ଚମତ୍କାରିତା ଦେଖାଇ ନିଜକୁ ଶ୍ରେଷ୍ଠ ବୋଲି ପରିଚିତ କରାଇଲେ ।

ଆଉ କେତେଜଣ ଅଭିଜ୍ଞ ଗୁଣୀ ମଣିଷ ଚେରମୂଳ, ଗଛପତ୍ର, ଫୁଲ ଫଳ ଓ ଅନ୍ୟ ଔଷଧ ମାଧ୍ୟମରେ ରୋଗ ଭଲ କରି ଅନ୍ୟମାନଂକ ଦୃଷ୍ଟିରେ ବଡ଼ ହେବାରେ ଲାଗିଲେ । ସେହିଭଳି ଗୁଣୀ ମଣିଷଂକୁ କୌଣସି କୌଣସି ସ୍ଥାନରେ ବିପୁଳ ସମର୍ଥନ ମିଳିଲା । ସେମାନେ ମଧ୍ୟ ଜଣେ ଜଣେ ଗୁରୁ ହିସାବରେ ମାନ୍ୟତା ପାଇଲେ । ତାଂକ ନାମ ବା ତାଂକ ଦ୍ୱାରା ପ୍ରଚାରିତ ମତବାଦ ବିଭିନ୍ନ ସମୟରେ, ବିଭିନ୍ନ ଧର୍ମ ନାମରେ ପରିଚିତ ହେବାରେ ଲାଗିଲା ।

ବହୁ ପ୍ରାଚୀନ ଯୁଗରୁ ସନାତନ ଧର୍ମର ପ୍ରଚଳନ ହୋଇ ରହି ଆସିଛି । ଏହି

ଧର୍ମର ମୂଳ ଲକ୍ଷ୍ୟ ଥିଲା, ନିଜେ ବଞ୍ଚିବା ସଂଗେ ସଂଗେ ଅନ୍ୟକୁ ବଞ୍ଚିବାକୁ ଦେବା । ବିପଦବେଳେ ଅନ୍ୟକୁ ସାହାଯ୍ୟ କରିବା । ସମୂହ ସ୍ୱାର୍ଥକୁ ରକ୍ଷା କରିବା ପାଇଁ କାର୍ଯ୍ୟ କରିବା । ଏହିଭଳି କାର୍ଯ୍ୟଗୁଡ଼ିକ ହିଁ ମଣିଷର ଧର୍ମରେ ପରିଣତ ହୋଇ ଚାଲିଲା । ଏହାକୁ ପ୍ରଥମେ ମାନବ ଧର୍ମ ବା ସନାତନ ଧର୍ମ ହିସାବରେ ଗ୍ରହଣ କରା ଯାଉଥିଲା । ଧର୍ମର ଅର୍ଥ ହେଲା, ପ୍ରାଣୀଜଗତର ଉପକାର ସାଧନ କରିବା । ଅନ୍ୟକୁ କଷ୍ଟ ନଦେବା ।

ପରବର୍ତ୍ତୀ କାଳରେ କେତେଜଣ ମହାମନୀଷୀ ତାଙ୍କର ତ୍ୟାଗ, ଦାନ ଓ ଜ୍ଞାନ ବଳରେ ଅନ୍ୟମାନଙ୍କ ଠାରୁ ଆଗକୁ ଚାଲିଗଲେ । କିଛି ନୂଆ କଥା କହି, ନୂଆ ଢଙ୍ଗର କାର୍ଯ୍ୟ ପ୍ରଣାଳୀ ମାଧ୍ୟମରେ ଜନ ସାଧାରଣଂକର ଉପକାର କରି ଚାଲିଲେ । ତାଂକ ଦ୍ୱାରା ପ୍ରଚାରିତ ମତବାଦ ମଧ୍ୟ ଗୋଟିଏ ଗୋଟିଏ ଧର୍ମରେ ପରିଣତ ହେବାରେ ଲାଗିଲା ।

ପୃଥିବୀ ତ ବହୁତ ବଡ଼ । କେବଳ ଭାରତ ବର୍ଷରେ ଅଂସଖ୍ୟ ମହାପୁରୁଷଙ୍କ ଦ୍ୱାରା ଅନେକ ଗୁଡ଼ିଏ ମତବାଦ ଧର୍ମ ନାମରେ ଚଳି ଆସୁଛି । ନିଜ ପସନ୍ଦର ମତବାଦକୁ ପ୍ରଚାର ପ୍ରସାର କରିବାକୁ କେତେକ ଜୀବନର ଶ୍ରେଷ୍ଠକର୍ମ ମନେ କରିଥା'ନ୍ତି ।

ତାଂକ ବିଶ୍ୱାସର ଦେବତା ବା ଗୁରୁଂକ ପୂଜା ଆରାଧନା ଫଳରେ ମଣିଷର ସକଳ ପାପ ତାପ ନଷ୍ଟ ହୋଇଯାଏ, ଅନ୍ୟମାନଂକ ଦ୍ୱାରା ତାହା ହୋଇ ପାରିବ ନାହିଁ । ଏଭଳି ଭୁଲ ଧାରଣା ବିଭିନ୍ନ ସମୟରେ ବିଭିନ୍ନ ଭକ୍ତମାନଙ୍କ ମନରେ ସୃଷ୍ଟି ହୋଇ ଆସିଛି । ପୂଜା ପଦ୍ଧତି, ପ୍ରାର୍ଥନା, ଭାଷା, ଶାସ୍ତ୍ର ପଠନ, ଧର୍ମଗ୍ରନ୍ଥ ଶ୍ରବଣ ଓ ଆତ୍ମ ସମର୍ପଣ ଇତ୍ୟାଦି ବିଭିନ୍ନ ଧର୍ମ ପାଇଁ ଭିନ୍ନ ଭିନ୍ନ ପ୍ରକାର ହେଉଥିବାରୁ ପରବର୍ତ୍ତୀ ସମୟରେ ବିଭିନ୍ନ ମତାବଲମ୍ବୀମାନଙ୍କ ମଧ୍ୟରେ ମତାନ୍ତର ଓ ମନାନ୍ତର ସୃଷ୍ଟି ହେବାରେ ଲାଗି ରହିଛି । ବର୍ତ୍ତମାନ ବିଚାର କଲେ, ଜଣାପଡୁଛି, ସମଗ୍ର ମାନବ ଜାତି ଏହି ମତବାଦ ବା ଧର୍ମକୁ ନେଇ ଭାଗ ଭାଗ ହୋଇ ଚାଲିଛି ।

ମାନବ ଧର୍ମ ବା ସନାତନ ଧର୍ମ ହେଉଛି, ପୃଥିବୀର ଏକମାତ୍ର ପ୍ରାଚୀନ ଧର୍ମ । ଅସଂଖ୍ୟ ସାଧୁ, ସନ୍ଥ, ମୁନି ଋଷି ଓ ଧୀଶକ୍ତି ସମ୍ପନ୍ନ ଯୁଗପୁରୁଷ ଏହି ଧର୍ମରେ ଅନେକ ପରିବର୍ତ୍ତନ ବା ସଂସ୍କାର କରି ଆସିଛନ୍ତି । ତନ୍ତ୍ର, ମନ୍ତ୍ର, ଯନ୍ତ୍ର ଓ ଈଶ୍ୱର ବିଶ୍ୱାସ ବିଭିନ୍ନ ସମୟରେ ବିଭିନ୍ନ ରୂପ ନେଇ ସନାତନ ଧର୍ମରେ ପ୍ରବେଶ କରିଆସିଛି ।

ତେଣୁ ଜାତିଭେଦ, ବେଦପାଠ, ଯଜ୍ଞ, ଦୀକ୍ଷା ଓ ମତବାଦକୁ ନେଇ ସନାତନ ଧର୍ମ ବିଭିନ୍ନ ମାର୍ଗକୁ ଦୃଷ୍ଟିରେ ରଖି ଭାଗ ଭାଗ ହୋଇ ଯାଇଛି ।

ମଧ୍ୟଯୁଗ ପୂର୍ବରୁ ଭାରତବର୍ଷରେ ଯେଉଁ ମତବାଦର ପ୍ରଚାର ଚାଲିଥିଲା, ତାହା ଥିଲା, ନାଥ ଓ ସିଦ୍ଧମାନଙ୍କର ସାଧନା । ହଠଯୋଗ ଓ ସହଜ ସମାଧି ଦ୍ୱାରା ମୋକ୍ଷ ଲାଭ କରିବା, ଏହି ସାଧନାର ମୂଳଲକ୍ଷ୍ୟ । ଏହି ନାଥ ସାଧନା ଏକଦା ସମଗ୍ର ଭାରତ ବର୍ଷରେ ପ୍ରସାର ଲାଭ କରି ପାରିଥିଲା । ଏହି ମାର୍ଗ ଉପରେ ବୌଦ୍ଧ ଧର୍ମ ଏବଂ ଶୈବ ଧର୍ମ ସମ୍ପ୍ରଦାୟ ସୃଷ୍ଟି ବୋଲି ଅନୁମାନ କରାଯାଏ । ମତ୍ସ୍ୟେନ୍ଦ୍ରନାଥ ହେଉଛନ୍ତି, ଏହି ନାଥ ସଂପ୍ରଦାୟର ସର୍ବପ୍ରଥମ ଆଚାର୍ଯ୍ୟ ।

ନାଥ ମତରେ ସିଦ୍ଧ ଦେହ ବା ଶୁଦ୍ଧ ଦେହକୁ ପ୍ରଣବ ତନୁ କୁହାଯାଏ । ପ୍ରଣବ ତନୁର ସାଧନା ଦ୍ୱାରା ନିଗମ ଦେଶ ଅର୍ଥାତ୍ ଦୁଃଖା-ସୁଖାତୀତ ଏକ ଅବସ୍ଥାର ଉପଲବ୍ଧ ହୋଇଥାଏ । ସିଦ୍ଧ ଯୋଗୀମାନେ ତାଙ୍କର ଇଷ୍ଟଦେବଙ୍କୁ ନିର୍ନାମ ଓ ଅନାମ ବୋଲି ସମ୍ବୋଧନ କରନ୍ତି । ପରବର୍ତ୍ତୀ ସମୟରେ ନାଥ ସମ୍ପ୍ରଦାୟ ମୂର୍ତ୍ତି ସାଧନାରେ ମନଯୋଗ ଦେଇଥିଲେ । ତ୍ୟାଗ ଓ ଭୋଗର ମିଳନ ଥିଲା, ନାଥ ସଂପ୍ରଦାୟର ମିଳନ କ୍ଷେତ୍ର ।

କେବଳ ନାଥ ସଂପ୍ରଦାୟ ନୁହେଁ, ଏହିଭଳି ଅନେକ ସଂପ୍ରଦାୟ ଭାରତ ବର୍ଷରେ ସୃଷ୍ଟି ହୋଇ, ନିଜର ମତବାଦକୁ ପ୍ରଚାର ପ୍ରସାର କରିଛି । କୌଣସି ଗୋଟିଏ ମତବାଦ ଦୁର୍ବଳ ହୋଇ ଯାଉଥିଲେ, ଅନ୍ୟଟି ଆଗେଇ ଚାଲିଥିଲା, ପଣ୍ଡିତମାନଙ୍କ ମତରେ ଏହି ବିବାଦ ବୈଦିକ ଯୁଗରୁ ଚାଲି ଆସିଛି ।

ଭାରତୀୟ ସମାଜରେ ନିମ୍ନ ଶ୍ରେଣୀଗୁଡ଼ିକ ହିଁ ସର୍ବଦା ବୃହତ୍ତର ଶ୍ରେଣୀ ହୋଇ ରହି ଆସିଛନ୍ତି । ଆର୍ଯ୍ୟମାନଙ୍କ ସମୟରେ ଏମାନେ ଆର୍ଯ୍ୟେତର ହୋଇ ରହିଥିଲେ । ଏମାନେ ନିଜକୁ ଅସହାୟ ମନେ କରି ସନାତନ ଧର୍ମ ପରିବର୍ତ୍ତେ ବୌଦ୍ଧଧର୍ମକୁ ଆଦରି ନେଇଥିଲେ । ମୁସଲମାନ ଶାସନ କାଳରେ ଏହି ନିମ୍ନ ଶ୍ରେଣୀର ଲୋକମାନେ ତାଂକ ଆଡ଼କୁ ଢଳି ପଡ଼ିଥିଲେ । କେତେକ ବାଧ୍ୟ ବାଧ୍ୟକତା କାରଣରୁ ମୁସଲିମ୍ ଧର୍ମକୁ ଗ୍ରହଣ କରିଥିଲେ । ଇଂରେଜ ଅମଳରେ ପାଦ୍ରୀମାନେ ଏମାନଙ୍କୁ ଏକ ବୃହତ ଖୋଲା ପଡ଼ିଆ ମନେ କରିଥିଲେ ।

ଯେତେବେଳେ କୌଣସି ନୂତନ ମତବାଦ ସୃଷ୍ଟି ହେଉଛି, ସେତେବେଳେ ଏହି ନିର୍ଯ୍ୟାତିତ ବୃହତ୍ତର ଶ୍ରେଣୀର ଲୋକମାନେ ତା'ର ଆଶ୍ରା ନେଇ ଯାଇଛନ୍ତି । ଅନେକ ସମୟରେ ରାଜଧର୍ମକୁ ଆଦରି ନେଇ ନିରୀହ ଜନତା ନୂତନ ଧର୍ମରେ ଦୀକ୍ଷିତ

ହୋଇଛନ୍ତି । ଯୁଗ ଯୁଗ ପାଇଁ ଏହା ସ୍ୱାଭାବିକ କଥା ହୋଇ ଯାଇଛି । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ରକ୍ଷଣଶୀଳତା ଅନେକ ସମୟରେ ସାଧାରଣ ଜନତାଂକୁ ଅଡୁଆରେ ପକାଇ ଦେଇଛି । କେତେବେଳେ ସେମାନେ ସୁବିଧାବାଦୀ ଉଚ୍ଚଜାତିର ଲୋକଙ୍କୁ ଆଶ୍ରା କରିଛନ୍ତି ତ କେତେବେଳେ ସୁବିଧା ସୁଯୋଗ ଦେଖି ପ୍ରତିବାଦ ବି କରିଛନ୍ତି । ଫଳରେ ପୁଣି ଆଉ ଗୋଟାଏ ନୂତନ ମତବାଦର ସୃଷ୍ଟି ହୋଇଛି ।

ଏହିଭଳି ଏକ ନୀରବ ପ୍ରତିବାଦରୁ ହିଁ ଊନ୍ନବିଂଶ ଶତାବ୍ଦୀରେ ଓଡ଼ିଶା ମାଟିରେ ମହିମା ଧର୍ମର ସୃଷ୍ଟି ହୋଇଛି । ପଣ୍ଡିତ ଓ ସମୀକ୍ଷକମାନେ ମହିମା ଧର୍ମକୁ ବୌଦ୍ଧ ଧର୍ମର ସହଜିଆ ମତ ବା ନାଥ ମତ ବାଦରେ ଏକ ମିଶ୍ରଣ ବୋଲି ମତ ଦେଇଥା'ନ୍ତି । ମହିମା ଧର୍ମର ନୀତି, ନିୟମ, ତ୍ୟାଗ ଓ ଭେକକୁ ଦେଖି କେତେକ ଏହାକୁ ପ୍ରାଚୀନ ଭାରତୀୟ ସନାତନ ଧର୍ମର ଅନ୍ୟ ଏକ ରୂପ ବୋଲି ଅବିହିତ କରିଥା'ନ୍ତି । କିନ୍ତୁ ମହିମା ଧର୍ମ ସ୍ୱୟଂ ସୃଷ୍ଟ ବୋଲି ସନ୍ନ୍ୟାସୀମାନେ ମତ ଦେଇଥାନ୍ତି ।

ମହିମା ଧର୍ମର ମୂଳ ହେଲା-ମହିମା । ପ୍ରଭୁଙ୍କ ମହିମାରୁ ହିଁ ଏହି ବିଶ୍ୱ ବ୍ରହ୍ମାଣ୍ଡ ସୃଷ୍ଟି ହୋଇ ଆତଯାତ ହେଉଛି । ତାଙ୍କର ମହିମା କଳ୍ପନାତୀତ । ବ୍ରହ୍ମ ହିଁ ଅଲେଖ ମହିମା । ସେ ହେଉଛନ୍ତି, ଅନନ୍ତ, ଅକ୍ଷୟ, ଅଜର, ଅବର୍ଣ୍ଣନୀୟ । କୌଣସି ରୂପ ଦେଇ ତାଂକୁ ପରିଚୟ କରାଇ ହେବ ନାହିଁ । ତାଂକର ମହିମା ହେଉଛି - ଅଲେଖ ।

ମହିମା ଧର୍ମର ଅନ୍ୟ ଏକ ନାମ ହେଉଛି - ଅଲେଖ ଧର୍ମ । ମହିମା ଦୀକ୍ଷାକୁ ଅଲେଖ ଦୀକ୍ଷା ମଧ୍ୟ କୁହାଯାଏ । ଯିଏ ନିଜ ମୂଳଗଛର ଡାଳ, ବ୍ୟୁହ, ନାମ ଓ ବିଗ୍ରହକୁ କାଟି ମୂଳକୁ ଫେରି ଆସିପାରିବ, ସିଏ ହିଁ ଅଲେଖ ମହିମାଂକ ପାଖରେ ପହଞ୍ଚି ପାରିବ । ଏହା ହେଉଛି, ମହିମା ଗୋସାଇଁଙ୍କର ମୂଳକଥା ।

ମହିମା ଧର୍ମର ଅନୁଗାମୀମାନେ ମହିମା ଗୋସାଇଁଙ୍କୁ ବୁଦ୍ଧସ୍ୱାମୀ ବା ପ୍ରବୁଦ୍ଧ ସ୍ୱାମୀ ବୋଲି କହିଥାଆନ୍ତି । ତାଂକୁ ପରମ ଗୁରୁ ବା ଅଲେଖ ଗୁରୁ ଭାବରେ ଗ୍ରହଣ କରି ଥାଆନ୍ତି । ଏମାନଂକ ମଧ୍ୟରେ ଗୃହୀ ଓ ସନ୍ନ୍ୟାସୀ ଥାଆନ୍ତି ।

ଏହି ଧର୍ମ ପ୍ରଥମେ ନିମ୍ନ ବର୍ଗର ଲୋକମାନଂକ ନିକଟରେ ଆଦୃତ ହୋଇ ପାରିଥିଲା । ଏଥିପାଇଁ ଅନେକ ଗୁଡ଼ିଏ ସମାଜ ଗତ କାରଣ ମଧ୍ୟ ରହିଥିଲା । ଠିକ୍ ସେହି ସମୟରେ ଖ୍ରୀଷ୍ଟଧର୍ମ ପ୍ରଚାର କାର୍ଯ୍ୟରେ ମିଶନାରୀମାନେ ଖୁବ୍ ତତ୍ପର ଥିଲେ । ଖ୍ରୀଷ୍ଟଧର୍ମ ପ୍ରଚାର ଓ ପ୍ରସାରର ଏକ ପ୍ରତିକ୍ରିୟା ରୂପେ ସମଗ୍ର ଭାରତ ବର୍ଷରେ ଆଉ

ଦୁଇଟି ଧର୍ମ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଯଥା -ଆର୍ଯ୍ୟ ସମାଜ ଓ ବ୍ରାହ୍ମ ସମାଜ । ଏହି ଦୁଇଟି ନୂତନ ଧାର୍ମିକ ମତବାଦ ସେ ସମୟର ରକ୍ଷଣଶୀଳ ହିନ୍ଦୁ ସମାଜରେ ଆଧୁନିକତା ପ୍ରବେଶ କରାଇ ପାରିଥିଲା ।

ସମସାମୟିକ ଇତିହାସ ଅନୁସଂଧାନ କରି ସମୀକ୍ଷକମାନେ ମତ ଦେଇଛନ୍ତି ଯେ, ମହିମା ଧର୍ମର ଆଦି ପ୍ରଚାରକ ମହିମା ଗୋସାଇଁ ଖ୍ରୀଷ୍ଟିୟାନ ମିଶନାରୀମାନଂକ ସଂପର୍କରେ ଆସିଥିଲେ । ବାଇବେଲ ଧର୍ମଗ୍ରନ୍ଥର ବଂଗଳା ଅନୁବାଦ ମଧ୍ୟ ସେ ପାଠକରିଥିଲେ । କୁଜୀବର ମଠର ଗୁରୁ ଓ ଅନୁଗାମୀମାନଂକ ସଂପର୍କରେ ମଧ୍ୟ ଆସିଥିଲେ ।

ଖ୍ରୀଷ୍ଟଧର୍ମରେ ଭଗବାନ ମଣିଷଙ୍କୁ ଭଲ ପାଆନ୍ତି ବୋଲି ଘୋଷଣା କରାଯାଇଛି । ମଣିଷ ମାତ୍ରେ ହିଁ ଭଗବାନଙ୍କର ସନ୍ତାନ । ତେଣୁ ପ୍ରତ୍ୟେକ ମଣିଷର ସମାନ ଅଧିକାର ରହିଛି । ବୌଦ୍ଧଧର୍ମ ପରି ଖ୍ରୀଷ୍ଟିୟାନ ଧର୍ମରେ ମଧ୍ୟ ସଂଘର ପରିକଳ୍ପନା ରହିଛି ।

ହିନ୍ଦୁ ଧର୍ମ ଅଧିନସ୍ଥ ବ୍ରାହ୍ମ ଧର୍ମର କଠୋର ନୀତି ନିକଟରେ ଯେଉଁମାନେ ଅଧିକ ନିର୍ଯାତିତ ହୋଇ ରହିଥିଲେ, ସେମାନେ ନିଜକୁ ଜଣେ ମଣିଷ ଭାବରେ ପରିଚୟ ଦେବାକୁ ମଧ୍ୟ ଭୟ କରୁଥିଲେ । ତେଣୁ ସେମାନେ ସହଜରେ ଖ୍ରୀଷ୍ଟିୟାନ ଧର୍ମ ପ୍ରତି ଆକୃଷ୍ଟ ହୋଇ ପଡୁଥିଲେ । ଫଳରେ ନିଜର ସ୍ଥିତି ଓ ଅଧିକାର ପ୍ରତି ସେମାନେ ସଚେତନ ହେବାରେ ଲାଗିଲେ ।

ଏହିପରି ଏକ ସନ୍ଧିକ୍ଷଣରେ ଓଡ଼ିଶା ମାଟିରୁ ସଂଭୂତ ମହିମା ଧର୍ମ ଜନସାଧାରଣଂକୁ ଘନ ଅନ୍ଧକାର ଭିତରୁ ଆଲୋକର ଛିଟା ଦେଖାଇଲା ।

ମହିମା ଧର୍ମ ଘୋଷଣା କଲା, 'ଜାତି-ଅଜାତି ମାନିବୁ ନାହିଁ । ରାଜା-ପ୍ରଜାର ଭେଦ ରହିବ ନାହିଁ । ଧନୀ-ଗରିବ ସମସ୍ତେ ଅଲେଖ ବ୍ରହ୍ମଙ୍କର ସନ୍ତାନ । ଭୋଗ ନୁହେଁ, ତ୍ୟାଗ ଦ୍ୱାରା ହିଁ ବ୍ରହ୍ମ ପ୍ରାପ୍ତି ସମ୍ଭବ । ସୃଷ୍ଟିର ମଂଗଳ କାମନା ଆମର କର୍ତ୍ତବ୍ୟ'।

ମହିମା ଧର୍ମ ବ୍ରାହ୍ମ ଧର୍ମ ପ୍ରଚଳିତ ବ୍ୟବସ୍ଥାକୁ ସ୍ୱୀକାର କଲାନାହିଁ । ଯେଉଁମାନେ ଏହି ଧର୍ମରେ ଦୀକ୍ଷିତ ହେଲେ, ସେମାନେ ସଂଘବଦ୍ଧ ଭାବରେ ଚଳିଲେ । ବୌଦ୍ଧ ଯୁଗର ଶ୍ରବଣ ଧର୍ମକୁ ସେମାନେ ଆପଣେଇ ନେଲେ । ଫଳରେ ବିଶୃଙ୍ଖଳିତ ସମାଜ ଛାତିରେ ଗୋଟାଏ ପ୍ରଚଣ୍ଡ ଶୃଙ୍ଖଳାର ମୂଳଦୁଆ ପଡ଼ିଲା । ଯେଉଁମାନେ ସାମାଜିକ ଅନ୍ଧକାର ଭିତରେ ଜୀବନ ଯାପନ କରୁଥିଲେ, ସେମାନେ ମହିମା ଧର୍ମ ରୂପକ ବିରାଟ ବୃକ୍ଷର ଛାୟା ତଳେ ଆଶ୍ରୟ ନେଲେ ।

ସେତେବେଳର ସମାଜପତି ଓ ଉଚ୍ଚବର୍ଗର ଲୋକେ ମହିମା ଧର୍ମକୁ ସହଜରେ ସ୍ୱୀକାର କରୁ ନଥିଲେ। ଏମାନଂକୁ ବିଧର୍ମୀ କହି ଘୃଣା କରୁଥିଲେ। ତଥାପି ନିଜସ୍ୱ ମୌଳିକ ଚିନ୍ତାଧାରା, ତ୍ୟାଗ ଓ ଗଭୀର ବିଶ୍ୱାସ ଫଳରେ ମହିମା ଧର୍ମାବଲମ୍ବୀମାନେ ନିଜର ସ୍ଥିତିକୁ ବଜାୟ ରଖି ପାରିଥିଲେ। ନାନା ବିଷମତା ସତ୍ତ୍ୱେ ଏକ ବିକଳ୍ପ ଭାବରେ ସମାଜରେ ମହିମା ଧର୍ମ ତିଷ୍ଠି ରହି ପାରିଲା।

ମହିମା ଧର୍ମ ହେଉଛି, ମୂଳତଃ ଏକ ସନ୍ଥଧର୍ମ। ତଥାପି ଅନେକ ଗୃହୀ ଏହି ଧର୍ମରେ ଦୀକ୍ଷିତ ହୋଇ ମହିମା ଧର୍ମର ପ୍ରଚାର ପ୍ରସାର ଦିଗରେ ବ୍ରତୀ ରହିଛନ୍ତି। କିନ୍ତୁ ସନ୍ନ୍ୟାସୀମାନେ ମାର୍ଗ ଦର୍ଶକ ଭାବରେ ମହିମା ଧର୍ମର ରୀତି ନୀତିକୁ ଓ ପରଂପରାକୁ ସୁରକ୍ଷା ଦେଇ ଆସିଛନ୍ତି ।

ପତିତ ସମାଜକୁ ରକ୍ଷା କରିବା ପାଇଁ ଯୁଗେ ଯୁଗେ ମହାପୁରୁଷ ଓ ସାଧୁ ସନ୍ଥ ମାନେ ଜନ୍ମଗ୍ରହଣ କରିଛନ୍ତି। ପ୍ରଚଳିତ ପରଂପରାକୁ ଭଂଗ କରି ନୂତନ ଦିଗ୍‌ଦର୍ଶନ ଦେଇ ଆସିଛନ୍ତି। କିଛି ଦିନ ପରେ ପୁଣି ସେଥିରେ ମଧ୍ୟ କଳଂକ ଲାଗିଛି, ତାକୁ ଛଡ଼େଇବା ଉଦ୍ଦେଶ୍ୟରେ ପୁଣି କେହି ନା କେହି ଚେଷ୍ଟା କରି ସଫଳ ବି ହୋଇଛନ୍ତି। ସେମାନଂକୁ ବିଧାତା ପ୍ରେରଣ କରିଥା'ନ୍ତି ବୋଲି ସାଧାରଣ ଲୋକଙ୍କ ଭିତରେ ଧାରଣା ସୃଷ୍ଟି ହୁଏ। ଏହି ଦୃଷ୍ଟିରୁ ବିଚାର କଲେ, ଅନୁମାନ କରିହୁଏ - ମହିମା ଧର୍ମ ସୃଷ୍ଟିହୋଇ ସମାଜରେ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛି। ସେତେବେଳର ଆବଶ୍ୟକତାକୁ ପୂରଣ କରିବା ପାଇଁ ସମର୍ଥ ହୋଇ ପାରିଛି। ସାମାଜିକ ଅନ୍ଧାରକୁ ଦୂର କରିବାରେ ଯଥେଷ୍ଟ ସହାୟ ହୋଇପାରିଛି। ପତିତ ମଣିଷ ମନରେ ଆତ୍ମ ବିଶ୍ୱାସ ଜାଗ୍ରତ କରାଇ ପାରିଛି। ଅସମ୍ଭବ ମନେ ହେଉଥିବା ଜାତି ପ୍ରଥାକୁ ଭାଂଗି ପାରିଛି। ଅଲଂଘନୀୟ ପରଂପରାକୁ ଲଂଘି ଯିବାକୁ ମଣିଷ ମନରେ ସାହସ ଯୋଗାଇ ଦେଇ ପାରିଛି। ମନ୍ଦିରରେ ପୂଜିତ ଦେବତାଂକୁ ହୃଦୟ ଭିତରେ ଥିବାର ଦେଖାଇ ପାରିଛି । ମନ୍ତ୍ର ବିନା ପ୍ରଭୁଙ୍କୁ ପାଇବାର ମାର୍ଗ ବି ଦେଖାଇ ଦେଇଛି। ଗୁରୁବାଦର ଅତ୍ୟାଚାରରୁ ମୁକ୍ତ ମହିମା ଧର୍ମୀମାନେ ସର୍ବଦା ପଥଚାରୀ ହୋଇ ଥିବାରୁ ପର-ଆପଣାର ଭେଦ ତାଂକଠାରୁ ଦୂରେଇ ରହିଛି ।

ମହିମା ଶବ୍ଦଟି ଆମ ମଣିଷ ସମାଜ ପାଇଁ ନୂଆ ନୁହେଁ। ଏହି ଶବ୍ଦ ବେଦର ପୁରୁଷ ସୂକ୍ତରେ ମଧ୍ୟ ଦେଖିବାକୁ ମିଳେ। ଓଡ଼ିଶାର ପଞ୍ଚ ମହାତ୍ମାଙ୍କ ରଚନାରେ ମଧ୍ୟ ମହିମା ଶବ୍ଦ ବହୁଳ ଭାବରେ ବ୍ୟବହାର କରା ଯାଇଛି। ତାଂକ ପରେ ଅରକ୍ଷିତ

ଦାସ ଏହି ମହିମା ଶବ୍ଦକୁ ଅସଂଖ୍ୟ କୃତିରେ ସ୍ଥାନ ଦେଇଛନ୍ତି ।

ଭାବାତ୍ମକ ଭାବରେ ଯିଏ ମହିମା, ଅଭାବାତ୍ମକ ଭାବରେ ସେହି ପୁଣି ହେଉଛନ୍ତି - ଅଲେଖ । ଭୀମ ଭୋଇଂକୁ ମହିମା ଧର୍ମର ସର୍ବଶ୍ରେଷ୍ଠ ସାହିତ୍ୟ ସାଧକ ଭାବରେ ଗ୍ରହଣ କରାଯାଏ । ସେ ସାହିତ୍ୟ କୃତି ମାଧ୍ୟମରେ ମହିମା ଧର୍ମର ମହିମାକୁ ବୃଦ୍ଧି କରିଦେଇ ପାରିଛନ୍ତି । ତା'ସହିତ ଓଡ଼ିଆ ସାହିତ୍ୟର ଗୌରବ ମଧ୍ୟ ବୃଦ୍ଧି କରିଛନ୍ତି । ମହିମା ଧର୍ମର ବିମୋଚନକାରୀ ବାଣୀଗୁଡ଼ିକୁ ସେ ସାହିତ୍ୟ ରୂପ ଦେଇ ଧର୍ମ ପ୍ରଚାରର ମାର୍ଗକୁ ସରଳ ଓ ସହଜ କରି ଦେଇଛନ୍ତି ।

ଭୀମ ଭୋଇଙ୍କ ରଚିତ ଭଜନ ଗୁଡ଼ିକୁ ମହିମା ଧର୍ମୀମାନେ ଯୋରନ୍ଦା ଓ ଖଲିଆ ପାଲିର ଉଭୟ ପୀଠରେ ବୋଲନ୍ତି । ସାଧାରଣ ଲୋକେ ମଧ୍ୟ ଭୀମ ଭୋଇଙ୍କ ଭଜନ ଗୁଡ଼ିକୁ ଗାଇ ଆତ୍ମ ବିଭୋର ହୁଅନ୍ତି । ଏହି ଭଜନ ଗୁଡ଼ିକରେ ସତ୍ୟ, ଧର୍ମ, ନ୍ୟାୟ, ନିଷ୍ଠା ଓ ତ୍ୟାଗର ମହିମା ଭରି ରହିଛି । ସମର୍ପଣ ଭାବ ହେଉଛି, ତାଂକ ଭଜନ ଗୁଡ଼ିକର ମର୍ମବାଣୀ । ତାଂକ ସଂପର୍କରେ ଏକ ସ୍ୱତନ୍ତ୍ର ପ୍ରବନ୍ଧରେ ବର୍ଣ୍ଣନା କରାଯାଇଛି ।

ବର୍ତ୍ତମାନ ଢେଂକାନାଳ ଜିଲ୍ଲାର ଯୋରନ୍ଦାଠାରେ ମହିମା ଧର୍ମର ମୁଖ୍ୟ କେନ୍ଦ୍ର ରହିଛି । ଏଇଠି ମହିମା ଗୋସାଇଁ ଅଖଣ୍ଡ ଧୂନି ମନ୍ଦିର ସ୍ଥାପନା କରିଥିଲେ । ସେହି ଧୂନି ସେହି ଦିନରୁ ଜଳି ଚାଲିଛି । ଏକ ନୂତନ ଯୁଗ ବା ନୂତନ ଆଶାର ଅଗ୍ନିକୁ ଜନ ସାଧାରଣଂକ ହୃଦୟରେ ଜାଗୃତ କରି ରଖିବାର ଏହା ଏକ ପ୍ରତୀକ ମାତ୍ର । ବିଶ୍ୱ ଶାନ୍ତି କାମନା ହେଉଛି ଏହି ଧ୍ୱନୀର ଏକ ମୌଳିକ ଲକ୍ଷ୍ୟ ।

ଆଶ୍ରମର ପୂର୍ବଦ୍ୱାର






# ମହିମା ଧର୍ମର ପ୍ରତିଷ୍ଠାତା : ମହିମା ଗୋସାଇଁ

ଅଠର ଶହ ମସିହାରେ ଭାରତର ଧର୍ମଧାରା ବିଭିନ୍ନ ଗତି ଦେଇ ବହି ଚାଲିଥିଲା । ଇଂରେଜମାନଙ୍କ ରାଜତ୍ୱ କାଳରେ ଖ୍ରୀଷ୍ଟିୟାନମାନେ ଭାରତରେ ପ୍ରବେଶ କରି ତାଂକର ଧର୍ମକୁ ପ୍ରଚାର ଓ ପ୍ରସାର କରିବାରେ ଲାଗିଲେ । ଶାସକମାନଂକ ଧର୍ମକୁ ଅନେକ ସାଧାରଣ ଲୋକ ସହଜରେ ଗ୍ରହଣ କରିନେଲେ। ଆଉ କେତେକ ଖ୍ରୀଷ୍ଟିୟାନ ଧର୍ମରେ ଥିବା ସନ୍ଦେଶ ସହିତ ଭ୍ରାତୃତ୍ୱର ଆବେଦନକୁ ସ୍ୱୀକାର କରିନେଲେ।

ହିନ୍ଦୁ ଧର୍ମରେ ଥିବା ଅସମାନତା, ଅସହିଷ୍ଣୁଭାବ ସମାଜର ଥିବା ବୃହତ୍ତର ଗୋଷ୍ଠୀକୁ ଅସନ୍ତୁଷ୍ଟ କରି ରଖିଥିଲା । ସେମାନେ ନିଜକୁ ଅସହାୟ ମନେ କରୁଥିଲେ । ଭାରତରେ ଥିବା ହୀନ ଜାତି ପ୍ରଥା ବ୍ୟବସ୍ଥା ସମାଜକୁ କଳୁଷିତ କରି ରଖିଥିଲା । ଉଚ୍ଚବର୍ଗର ଲୋକେ ନୀଚ ବର୍ଗର ଲୋକଙ୍କୁ ଅତି ଘୃଣା ଦୃଷ୍ଟିରେ ଦେଖୁଥିଲେ । ଛୁଆଁ-ଅଛୁଆଁ ଭେଦଭାବ ସେମାନଂକ ହୃଦୟକୁ ଆଘାତ ଦେଉଥିଲା । ଏଭଳି ପରିସ୍ଥିତିରେ କେତେକ ଅସହାୟ ଲୋକ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବାକୁ ଶ୍ରେୟ ମନେ କରିଥିଲେ । କାରଣ ଏହାଦ୍ୱାରା ସେମାନଙ୍କର କିଛି ହରାଇବାର ଭୟ ନଥିଲା ।

ଯେଉଁମାନେ ଧର୍ମର ଧ୍ୱଜା ଧରି ନିଜକୁ ଧର୍ମ ରକ୍ଷାକାରୀ ମନେ କରୁଥିଲେ, ସେମାନଂକର ନିଦ୍ରାଭଂଗ ହେବା ବେଳକୁ ନେଡ଼ିଗୁଡ଼ କହୁଣୀକୁ ବହିଯାଇ ସାରିଥିଲା । ଭାରତ ତଥା ବିଶେଷ କରି ଓଡ଼ିଶାରେ ପୂର୍ବରୁ ବୈଷ୍ଣବ ଧର୍ମ ଓ ବ୍ରାହ୍ମ୍ୟଧର୍ମରେ ଦୀକ୍ଷିତ ରକ୍ଷଣଶୀଳ ଗୋଷ୍ଠୀର ଲୋକେ ଖ୍ରୀଷ୍ଟିୟାନ ଧର୍ମର ପ୍ରବଳ ସ୍ରୋତକୁ ଅଟକାଇ ପାରିଲେ ନାହିଁ । ବରଂ ଓଡ଼ିଶା ମାଟିରେ ଯେଉଁ ଆଧ୍ୟାତ୍ମିକତାର ଯେଉଁ ମୂଳ ନିର୍ଗୁଣ ଧାରାଟି ଦୀର୍ଘ ଶହେ ବର୍ଷ ଧରି ଆତ୍ମ ଗୋପନ କରି ରହିଥିଲା, ତାର ନିଦ୍ରା ଭଂଗହେଲା । ନିର୍ଗୁଣ ଓ ଶୂନ୍ୟବାଦୀ ପଞ୍ଚସଖାମାନେ ଅସଂଖ୍ୟ ପୁସ୍ତକ ରଚ଼ନା କରି ନିର୍ଗୁଣ ଧାରାର ମୂଳଦୁଆକୁ ଅତ୍ୟନ୍ତ ଦୃଢ଼ କରି ରଖିଥିଲେ ।

ପଞ୍ଚସଖାଙ୍କ ପରେ ପରେ ଖଡ଼ିଆଳର ଚୈତନ୍ୟ ଦାସ ନିର୍ଗୁଣ ସାହିତ୍ୟକୁ ସୁଦୃଢ଼ କରି ପରମ ବ୍ରହ୍ମଂକୁ ଅଲେଖ ପୁରୁଷ ବୋଲି ଘୋଷଣା କଲେ ।

ଯଥା - *ଅଗୋଚ଼ର ପୁରୁଷ ସେ ନାହିଁ ରୂପବର୍ଣ୍ଣ,*
*ଥଏ ଥିତି ନାହିଁ ତା'ର ଅଟଇ ମହାଶୂନ୍ୟ ।*
*ଶୂନ୍ୟଗର୍ଭେ ଅଲେଖ ଅଲେଖ ଗର୍ଭେ ଶୂନ୍ୟ,*
*ଅଲେଖ ପୁରୁଷ ଶୂନ୍ୟ ଦୁହେଁ ଏକଇ ସମାନ ।*

କେବଳ ପଞ୍ଚସଖା ବା ଚୈତନ୍ୟ ଦାସ ନୁହଁନ୍ତି, ତାଂକର ସମସାମୟିକ ସାଧକମାନେ ବିଭିନ୍ନ ସ୍ଥାନରେ ନିଜର ଅନୁଗାମୀମାନଂକ ସହିତ ନିର୍ଗୁଣ ସାହିତ୍ୟ ସାଧନାରେ ଲାଗି ରହିଥିଲେ ।

ପଞ୍ଚସଖାମାନେ ତତ୍‌କାଳୀନ ଶାସକଙ୍କର କଟାକ୍ଷ ସହ୍ୟ କରି ଅନେକ ପରୀକ୍ଷାର ସମ୍ମୁଖୀନ ହୋଇଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ତାହା ସମ୍ଭବ ହୋଇ ପାରିଲା ନାହିଁ । ରାଜନୈତିକ ବିପର୍ଯ୍ୟୟ ଘଟିବାରୁ ସକଳ ଧର୍ମର ମିଳନ ପୀଠ ଶ୍ରୀକ୍ଷେତ୍ର ପୁରୀରେ ମଧ୍ୟ ଧର୍ମ ଓ ସଂସ୍କୃତି ଅସ୍ତବ୍ୟସ୍ତ ହୋଇ ପଡ଼ିଲା । ଧର୍ମ-ସଂସ୍କୃତିର ରକ୍ଷାକାରୀମାନେ ରାଜାଙ୍କ ସହଯୋଗ ନପାଇ ସେଠାରୁ ଅପସରି ଯିବାକୁ ଶ୍ରେୟ ମନେ କରିଥିଲେ । ସେମାନଙ୍କ ମଧ୍ୟରୁ ଅନେକ ଅରଣ୍ୟ ଓ ଗିରି କନ୍ଦରକୁ ଚ଼ାଲିଯାଇ କୌଣସି ପ୍ରକାରେ ନିଜର ଅସ୍ତିତ୍ୱକୁ ବଜାୟ ରଖିବାକୁ ଚେ଼ଷ୍ଟା କରିଥିଲେ ।

ପ୍ରମାଣ ମିଳେ, ମହିମା ଧର୍ମ ଇତିହାସ ପୁସ୍ତକରେ ମହିମା ଗୋସାଇଁଙ୍କ ପରିଚ଼ୟ ସଂପର୍କରେ, ଏହି ମର୍ତ୍ତ୍ୟ ଭୁବନରେ ସତ୍ୟ ଧର୍ମର ଗ୍ଲାନି ଘଟିବାରୁ କରୁଣାମୟ

ବିଭୁ ଅଲେଖ ପରଂବ୍ରହ୍ମ ମହା ମହିମା ସ୍ୱାମୀ ଧରାଧାମକୁ ଅବତରୀ ଆସିଥିଲେ। ପ୍ରଥମେ ସେ ହିମାଳୟ ଗିରି ଶିଖରରେ ଅନେକ ବର୍ଷ ଆତ୍ମଯୋଗ ସମାଧିରେ ରହିଥିଲେ। ପରେ ସିଦ୍ଧ ମୁନିମାନଙ୍କୁ ମାନବ କୁଳରେ ଜନ୍ମ ନେବାକୁ ଆଦେଶ ଦେଲେ। ଗୁପ୍ତରେ ସେ ସନ୍ନ୍ୟାସୀ ବେଶ ଧାରଣ କଲେ । ସମଗ୍ର ଭାରତ ଭ୍ରମଣ ଶେଷରେ ସେ ଶ୍ରୀକ୍ଷେତ୍ର ପୁରୀରେ ପହଞ୍ଚିଲେ। ସେଠାରେ ସେ ବଡ଼ଦାଣ୍ଡ ଧୂଳିରେ ଶୋଉଥିଲେ। କାହାରି ସହିତ ବିଶେଷ କଥାବାର୍ତ୍ତା କରୁ ନଥିଲେ। କେହି କେବେ ତାଂକୁ ଭବିଷ୍ୟତ କଥା ପଚାରୁଥିଲେ, ସେ ସତ୍ୟ ପ୍ରକାଶ କରି ଦେଉଥିଲେ। ତେଣୁ ଲୋକେ ତାଂକୁ "ଧୂଳିଆ ବାବା" ଭାବରେ ଜାଣୁଥିଲେ।

୧୮୨୬ ମସିହାରେ ସେ ପୁରୀ ମୁକ୍ତି ମଣ୍ଡପରେ ଉପସ୍ଥିତ ହୋଇ ବ୍ରହ୍ମଙ୍କର ପରିଚୟ ଦେଇ କହିଥିଲେ, 'ବ୍ରହ୍ମ ନିର୍ଗୁଣ ଓ ସଚ୍ଚିଦାନନ୍ଦ' ।

କିଛିଦିନ ପରେ ମହିମା ଗୋସାଇଁ ଶ୍ରୀକ୍ଷେତ୍ରରୁ ଆସି ଖଣ୍ଡଗିରି ଗୁମ୍ଫାରେ ପୁଣି ଯୋଗ ସମାଧିରେ ରହିଲେ। ସେଠାରେ ସେ କେତେକ ଅଲୌକିକ ଘଟଣା ଘଟାଇ ୧୮୩୮ ମସିହାରେ ଢେଂକାନାଳର ବିଖ୍ୟାତ ଶୈବପୀଠ କପିଳାସକୁ ଆସିଲେ।

କପିଳାସଠାରେ ଗୈରିକ ବସ୍ତ୍ର, କୌପୀନ ଓ ଜଟାଭାରକୁ ତ୍ୟାଗ କରି ମହିମା ଗୋସାଇଁ ବଲ୍କଳ ଭେକବାନା ପିନ୍ଧିଲେ। ପର୍ବତର ସର୍ବୋଚ୍ଚ ଶିଖରରେ ଦକ୍ଷିଣ ଭାଗରେ ଥିବା ଗୋଟାଏ ଚକା ପଥର ଉପରେ ଯୋଗ ସାଧନାରେ ବସି ରହିଲେ।

ସଦାନନ୍ଦ ନାମକ ଜଣେ ଶବର , ଗୋସାଇଁଙ୍କୁ ଦୀର୍ଘଦିନ ଧରି ଫଳ ମୂଳ ଆଣି ଯୋଗାଇ ଦେଉଥିଲା। ସେ କେବଳ ଫଳ ଆହାର କରି ବଞ୍ଚି ରହୁଥିବାରୁ ତାଂକୁ ଲୋକେ "ଫଳାହାରୀ ବାବା" ଭାବେ ଜାଣୁଥିଲେ।

କିଛିଦିନ ପରେ ଅନ୍ୟଜଣେ ବ୍ରହ୍ମଚାରୀ ଆସି ମହିମା ଗୋସାଇଁଙ୍କୁ ପର୍ବତ ଶିଖରରେ ସାକ୍ଷାତ କଲେ। ମହିମା ସ୍ୱାମୀ ତାଂକୁ ସତ୍ୟ ଧର୍ମ ପ୍ରଚାର ପାଇଁ ଅଲେଖ ମହିମା ଧର୍ମରେ ଦୀକ୍ଷିତ କରାଇଲେ। ସେ କିଛିଦିନ କପିଳାସରେ ରହି ଗୋସାଇଁଙ୍କୁ ଫଳ ମୂଳ ଦେଇ ସେବା କରିଥିଲେ। ତାଂକର ନୂଆ ନାମ ରଖାଗଲା, "ଗୋବିନ୍ଦ ବାବା" । ସେ ହେଲେ ମହିମା ଧର୍ମର ପ୍ରଥମ ସନ୍ନ୍ୟାସୀ ଓ ମହିମା ଗୋସାଇଁଙ୍କ ପ୍ରଥମ ଶିଷ୍ୟ।

ଗୋବିନ୍ଦ ବାବା ଗୁରୁଙ୍କ ଆଦେଶ ପାଇ ମହିମା ଧର୍ମର ପ୍ରଚାର ପାଇଁ ଓଡ଼ିଶାର ପଶ୍ଚିମାଞ୍ଚଳକୁ ବାହାରି ଗଲେ। ବୌଦ୍ଧ ରାଜ୍ୟରେ ପହଞ୍ଚି ଜନ

ସାଧାରଣଙ୍କୁ ମହିମା ଧର୍ମ ସଂପର୍କରେ ବୁଝାଇଲେ । ବଲାସିଂହା ଗ୍ରାମରେ ଟୁଙ୍ଗୀ ନିର୍ମାଣ କରି ମଝିରେ ମଝିରେ ଆସି ସେଇଠି ରହିଲେ । ସେଠାରେ ସେ ଭକ୍ତମାନଙ୍କୁ କେତେକ ଅଲୌକିକ ଶକ୍ତି ଦେଖାଇ ଚମତ୍କୃତ କଲେ । ତେଣୁ ସାଧାରଣ ଲୋକେ ତାଂକୁ ସିଦ୍ଧ ପୁରୁଷ ଭାବରେ ମାନିନେଲେ ।

ବୌଦ୍ଧର ରାଜା ଓ ରାଣୀଙ୍କୁ ସାକ୍ଷାତ କରି ଗୋବିନ୍ଦ ବାବା ମହିମା ଧର୍ମର ତତ୍ତ୍ୱ ଓ ଉପଦେଶ ଉତ୍ତମ ରୂପେ ବୁଝାଇ ଦେଲେ । ତାଂକୁ ଆଶୀର୍ବାଦ କରି ପ୍ରଭୁଙ୍କ ନାମ ଭଜନ ପାଇଁ ପରାମର୍ଶ ଦେଇ ଆସିଲେ ।

କପିଳାସ ଶିଖରରେ ମହିମା ସ୍ୱାମୀଙ୍କ ଆବିର୍ଭାବ ସମ୍ବାଦ ପାଇ ଢେଙ୍କାନାଳର ସୁଶାସକ ରାଜା ଭାଗୀରଥି ଭ୍ରମରବର ବାହାଦୂର ତାଂକୁ ସାକ୍ଷାତ କଲେ । ତାଂକର କୌଣସି ସନ୍ତାନ-ସନ୍ତତି ନଥିଲେ । ତାଂକଠାରୁ ରାଜା ମହିମା ଧର୍ମର ତତ୍ତ୍ୱବାଣୀ ମଧ୍ୟ ଶୁଣିଥିଲେ । ସ୍ୱାମୀଙ୍କର ମହିମା ଓ ଅଲୌକିକ ଶକ୍ତି ଉପରେ ବିଶ୍ୱାସ ରଖି ତାଙ୍କୁ ନିୟମିତ ବାରବର୍ଷ ପର୍ଯ୍ୟନ୍ତ ଦୁଗ୍ଧ ଆହାର ବ୍ୟବସ୍ଥା କରାଇଥିଲେ ।

ଆଖପାଖ ଅଞ୍ଚଳର ଭକ୍ତମାନେ ମହିମା ସ୍ୱାମୀଙ୍କ ପାଇଁ କପିଳାସ ପର୍ବତ ଶିଖରରେ ଆଶ୍ରମଟିଏ ଗଢ଼ିଦେଲେ । ୧୮୫୦ ବେଳକୁ ମହିମା ସ୍ୱାମୀ ସେହି ଆଶ୍ରମରେ ଥାଇ ରାଜାଂକ ପାଖରୁ ଆସୁଥିବା ଦୁଗ୍ଧ ପାନ କରି ଆତ୍ମ ଯୋଗ ସମାଧିରେ ମଗ୍ନଥାଆନ୍ତି ।

ଶୁଣାଯାଏ, ମହିମା ଗୋସାଇଁ ଥରେ ସ୍ୱପ୍ନରେ ଗୋବିନ୍ଦ ବାବାଙ୍କୁ ଦେଖାଦେଇ ରେଢ଼ାଖୋଲ ଅଞ୍ଚଳରେ ଥିବା କଙ୍କଣ ପଡ଼ା ଗ୍ରାମକୁ ଯାଇ ଭୀମ ଭୋଇଙ୍କୁ ମହିମା ଧର୍ମରେ ଦୀକ୍ଷିତ କରି ଶୂନ୍ୟରେ ଫେରି ଆସିଲେ । ଆଉଥରେ ଭୀମ ଭୋଇ କୂଅରେ ପଡ଼ି ଯାଇଥିଲେ, ତାଂକୁ ମଧ୍ୟ ନିଜର ଅଲୌକିକ ଶକ୍ତି ବଳରେ ସେ ଉଦ୍ଧାର କରିଥିଲେ ।

ଫଳାହାର ପରେ ଦୁଗ୍ଧାହାର କରି ମହିମା ସ୍ୱାମୀ ଶେଷରେ ଅନ୍ନାହାର କଲେ । ୧୮୬୨ ମସିହାରେ ବ୍ରାହ୍ମଣୀ ନଦୀ କୂଳରେ ଥିବା କାଶୀପୁର ଗ୍ରାମରେ ଥିବା ଗଂଗାଧର ସାହୁ ଓ ତାଂକ ପତ୍ନୀଙ୍କୁ ମହିମା ଧର୍ମରେ ଦୀକ୍ଷିତ କରାଇଥିଲେ । ତାଙ୍କରି ଘରୁ ସେ ପ୍ରଥମେ ଅନ୍ନ ଭୋଜନ କଲେ । ଭୋଜନକୁ ମହିମା ଧର୍ମରେ 'ଭିକ୍ଷା' କୁହାଯାଏ ।

ମହିମା ସ୍ୱାମୀ ନିଶାର୍ଦ୍ଧରେ ଗୋବିନ୍ଦ ବାବାଙ୍କୁ ସାଙ୍ଗରେ ଧରି ଭୀମ ଭୋଇଙ୍କୁ ଦର୍ଶନ ଦେଲେ । ତାଙ୍କୁ କବିତା ଶକ୍ତି ପ୍ରଦାନ କଲେ ।

ବଲାଙ୍ଗୀରେ ପହଞ୍ଚି ମହିମା ସ୍ୱାମୀ ଗୋବିନ୍ଦ ବାବାଙ୍କ ସହିତ ମିଶି ସମ୍ବଲପୁର, ସୋନପୁର ଭ୍ରମଣ କରି ଭକ୍ତମାନଙ୍କୁ ମହିମା ଧର୍ମରେ ଦୀକ୍ଷିତ କରି ଚାଲିଲେ । ବିଭିନ୍ନ ସ୍ଥାନରେ ଟୁଙ୍ଗୀମାନ ନିର୍ମାଣ କଲେ । ସେଠାରେ ଭଜନ କୀର୍ତ୍ତନ ଓ ବ୍ରହ୍ମ ମହିମା ଗାନ ଚାଲିଲା ।

ବିଭିନ୍ନ ସମୟରେ ଗୋବିନ୍ଦ ବାବା ଅଲୌକିକ ଶକ୍ତି ଦେଖାଇ ମୃତ ଜୀବକୁ ଜୀବଦାନ ଦେଲେ । ପର୍ବତରୁ ଜଳଧାର ସୃଷ୍ଟି କଲେ । ଉଭା ନଦୀକୁ ନିର୍ବିଘ୍ନରେ ପାରିହେଲେ ଓ ବନ୍ୟାଜଳକୁ ଶୋଷଣ କରିଦେଲେ ବୋଲି ଲୋକମୁଖରୁ ଶୁଣିବାକୁ ମିଳେ ।

ମହିମା ସ୍ୱାମୀ ଓଡ଼ିଶାର ବିଭିନ୍ନ ସ୍ଥାନ ଭ୍ରମଣ କରି ନିଜ ପ୍ରଚାରିତ ଧର୍ମକୁ ବେଶ ଲୋକପ୍ରିୟ କରାଇ ପାରିଥିଲେ । ବିଭିନ୍ନ ସ୍ଥାନରେ ଭକ୍ତମାନଙ୍କ ସହାୟତାରେ ଟୁଙ୍ଗୀ ଓ ଧୂନିଘର ସ୍ଥାପନା କରିଥିଲେ ।

ଅନ୍ଧାରୁଆ ଗ୍ରାମରେ ମହିମା ସ୍ୱାମୀଙ୍କ ସହିତ ନୃସିଂହ ଦାସଂକର ସାକ୍ଷାତ ହେଲା । ସେ ତାଂକୁ ଶିଷ୍ୟ ରୂପେ ଗ୍ରହଣ କରିନେଲେ । ତାପରେ ଡମଣା ଟୁଙ୍ଗୀ ଧୂନିଘର ସମୀପରେ ସଂସାର ତ୍ୟାଗୀ ଭାଗୀରଥି, ଭଗବାନ, କୃଷ୍ଣଚନ୍ଦ୍ର, କୃପାସିନ୍ଧୁ, ମାଧବାନନ୍ଦ ଓ ଅଚ୍ୟୁତାନନ୍ଦ ପ୍ରଭୃତି ସ୍ୱାମୀଙ୍କ ଗହଣରେ ରହି ଖଟୁ ଥାଆନ୍ତି । ଗୁରୁସ୍ୱାମୀ ସେଇଠି ଧୂନିଘର ନିକଟରେ ମହିମା ପ୍ରସାଦ ଉତ୍ସବରେ ସେମାନଂକୁ ବଲ୍କଳ ବାନା ଅର୍ପଣ କରି ଅବଧୂତ ସନ୍ନ୍ୟାସୀର ଧର୍ମନୀତି ବୁଝାଇ ଦେଲେ ।

ବାବା ଭଗବାନ ଦାସଙ୍କୁ ବାଙ୍କି ତିଗିରିଆ ମାଳ ବିହାରପୁର ଯାଇ ଧୂନିଘର ସ୍ଥାପନ କରିବାକୁ ସ୍ୱାମୀ ଆଦେଶ ଦେଲେ । କୃପାସିନ୍ଧୁ ବାବା ଢେଙ୍କାନାଳକୁ ଓ ମାଧବାନନ୍ଦ ବାବାଂକ ସହିତ ଅଚ୍ୟୁତାନନ୍ଦ ବାବା ଖୋର୍ଦ୍ଧା ଅଂଚଳକୁ ଯାଇ ଧର୍ମ ପ୍ରଚାର କଲେ । ଭାଗୀରଥି ବାବା ଓ କୃଷ୍ଣଚନ୍ଦ୍ର ବାବା ଉତ୍ତର ଦିଗକୁ ଗଲେ ।

ମହିମା ସ୍ୱାମୀଙ୍କର ଆଦେଶକୁ ମାନି ଗୋବିନ୍ଦ ବାବା ଓ ନୃସିଂହ ବାବା ତାଂକ ପାଖେ ପାଖେ ରହିଲେ । ଦାରୁଠେଙ୍ଗ ଗ୍ରାମ ଦେଇ ସ୍ୱାମୀ ଖୋର୍ଦ୍ଧା ଭ୍ରମଣ କରି ଗିରି ପାଦପଦ୍ମ ପାହାଡ଼ ଗୁମ୍ଫାରେ ଅବସ୍ଥାନ କରି ଆତ୍ମଯୋଗ ସମାଧିରେ ରହିଥିଲେ । ତା'ପରେ ବିଭିନ୍ନ ଅଂଚଳ ଭ୍ରମଣ କରି ମହିମା ସ୍ୱାମୀ ଧର୍ମ ପ୍ରଚାର କରି ଚାଲିଲେ । ଆବଶ୍ୟକ ସ୍ଥଳେ ନିଜର ଐଶୀ ଶକ୍ତି ବଳରେ ଦୁଃଖୀ ଲୋକଙ୍କର ଦୁଃଖ ଦୂର କରି ଚାଲିଲେ ।

ସ୍ୱାମୀଙ୍କଠାରୁ ବିଦାୟ ନେଇ ଗୋବିନ୍ଦ ବାବା ଦାରୁଠେଙ୍ଗଠାରେ ଧୂନିଘର ପ୍ରତିଷ୍ଠା କରି କେନ୍ଦୁଝର ଓ ଆଠଗଡ଼ ଭ୍ରମଣରେ ବାହାରିଲେ। ଡାଳିଯୋଡ଼ା, ସପନପୁର, ଅଗରାହାଟ, ଆଠଗଡ଼ ଓ ନଅବେଡ଼ା ଅଂଚଳରେ ଭକ୍ତମାନଙ୍କୁ ମହିମା ଧର୍ମରେ ଦୀକ୍ଷିତ କରାଇଲେ। ଦାରୁଠେଙ୍ଗ ଟୁଙ୍ଗୀ ରେ ଥିବା ଅବସ୍ଥାରେ ଗୋବିନ୍ଦ ବାବା ଆମାଶୟ ରୋଗରେ ପଡ଼ି ଅସୁସ୍ଥ ହୋଇ ୧୮୬୪ ମସିହାରେ ଇହଲୀଳା ତ୍ୟାଗ କଲେ । ଏବେ ସେଠାରେ ଏକ ମନ୍ଦିର ଗଢ଼ା ଯାଇଛି ।

ମହିମା ସ୍ୱାମୀଙ୍କ ଆଜ୍ଞାରେ ନୃସିଂହ ବାବାଂକ ଚେଷ୍ଟାରେ ବାଙ୍କି ଅଞ୍ଚଳର ମାଳ ବିହାରପୁରରେ ଧୂନି ସ୍ଥାପନା କରି ଅନେକ ଲୋକ ଦୀକ୍ଷା ଗ୍ରହଣ କଲେ। ମହିମା ସ୍ୱାମୀ ଚତୁର୍ଦ୍ଦଶୀ ତିଥିରେ ଉପସ୍ଥିତ ହୋଇ ସେଠାରେ ବୃହତ ମହିମା ମହାପ୍ରସାଦର ବ୍ୟବସ୍ଥା କଲେ। ଅସଂଖ୍ୟ ଲୋକ ଗୃହସ୍ଥ ନରନାରୀ ମହିମା ଧର୍ମରେ ଦୀକ୍ଷିତ ହେଲେ। ତିଗିରିଆ ରାଜା ଏହି କାର୍ଯ୍ୟକ୍ରମ ପାଇଁ ଯଥେଷ୍ଟ ଧନ ସାହାଯ୍ୟ କରିଥିଲେ। ସ୍ୱାମୀଙ୍କର ପରାମର୍ଶରେ ସେଠାରେ ଧୂନିଘର ନିର୍ମାଣ କରାଗଲା। ନୃସିଂହ ବାବା ସେଠାରେ ରହି ତ୍ରିସଂଧ୍ୟାରେ ଧୂନିରେ ଆହୁତି ଦେଇ ଚାଲିଲେ। ସ୍ୱାମୀଙ୍କ ଆଦେଶ ପାଇ ସେ ଚୌଷଠି ସିଦ୍ଧଙ୍କୁ ଯଥାବିଧି ବଳ୍କଳ ଭେକ ବାନା ଦେଇ ସନ୍ନ୍ୟାସୀ କରାଇଲେ। ସେମାନେ ହେଲେ, ବାଞ୍ଛାନିଧି ବାବା, ଅନନ୍ତ ବାବା, ଧ୍ୟାନବାବା, ଅଭାଗୀ ବାବା, ମଧୁସୂଦନ ବାବା, କିଶୋରୀ ବାବା, ସାନ ବଳରାମ ବାବା, ଦାମୋଦର ବାବା, କୃଷ୍ଣବାବା, ରଘୁବର ବାବା, ଶ୍ରୀଚରଣ ବାବା, ଅନାମ ବାବା, ନୀଳାଦ୍ରି ବାବା, ଅପର୍ତ୍ତି ବାବା, କାଳୁବାବା, ଗଣେଶ ବାବା ଓ ଗେଉ ବାବା।

ମହିମା ସ୍ୱାମୀ ବିଭିନ୍ନ ସମୟରେ ମଂଗରାଜ ପୁର, ଦାଳିଯୋଡ଼ା, ଢେଙ୍କାନାଳ, ହିନ୍ଦୋଳ, ଅନୁଗୋଳ, ଆଠଗଡ଼ ଓ କାଶୀପୁର ପ୍ରଭୃତି ସ୍ଥାନ ଭ୍ରମଣ କରି ମହିମା ଧର୍ମର ପ୍ରଚାର ପ୍ରସାର କରି, ଅନେକ ଅଲୌକିକ ଘଟଣା ମାଧ୍ୟମରେ ଭକ୍ତମାନଙ୍କୁ ଆକର୍ଷିତ କରି ପାରିଥିଲେ। ତାଙ୍କ ଆଜ୍ଞାରେ ଏକାନବେ ଜଣ ଶିଷ୍ୟଙ୍କୁ ବଳ୍କଳ ବାନା ପ୍ରଦାନ କରା ଯାଇଥିଲା। ସ୍ୱାମୀ ଆଦେଶ ଦେଲେ, ନନ୍ଦ ବାବାଂକ ପରେ ବଳ୍କଳ ପ୍ରଦାନ ବନ୍ଦ ରହିବ ।

ପ୍ରଥମେ ଖୁଣ୍ଟୁଣୀ ଓ ମାଳ ବିହାର ପୁର ପରେ ୧୮୬୬ ମସିହାରେ ଢେଙ୍କାନାଳର ବଉଳପୁରରେ ମହିମା ମହାପ୍ରସାଦ ବ୍ୟବସ୍ଥା ହେଲା। ବ୍ରହ୍ମପୁର ଓ ମଡ଼ି ଗ୍ରାମଠାରେ ଟୁଙ୍ଗୀ ତିଆରି କରି ମହିମା ସ୍ୱାମୀ ଯୋରନ୍ଦା ଗ୍ରାମରେ ବିରାଜମାନ ହେଲେ। ସେଠାରେ

ଟୁଙ୍ଗୀ ତିଆରି ହେଲା । ସେଠାରେ ମାଘ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ବୃହତ ମହିମା ପ୍ରସାଦ ଉତ୍ସବ ଅନୁଷ୍ଠିତ ହେଲା ।

ଧର୍ମାତ୍ମା ରାଜା ଭାଗୀରଥି ଭ୍ରମରବର ମହିମା ଗୋସାଇଁଙ୍କ ମହିମାଧାମ ପ୍ରତିଷ୍ଠା ପାଇଁ ୫୨ ଏକର ଭୂମି ଯୋଗାଇ ଦେଲେ। ତାଂକର ବଦାନ୍ୟତା ପାଇଁ ମହିମା ସ୍ୱାମୀ ରାଜାଙ୍କୁ ଯଶସ୍ୱୀ ହେବାକୁ ଆଶୀର୍ବାଦ କଲେ । ମହିମା ଧାମ ପ୍ରତିଷ୍ଠା କରିବାକୁ ମହିମା ସ୍ୱାମୀ ଓ ଆଗ୍ରହୀ ଭକ୍ତମାନେ ଦୁଇ ହଜାର ଖଣ୍ଡ ପ୍ରସ୍ତର କଟାଇ ରଖି ଥାଆନ୍ତି । କୁମ୍ଭମାସ ଶୁକ୍ଳପକ୍ଷ ଏକ ଶୁଭ ଲଗ୍ନରେ ଯୋରନ୍ଦାଠାରେ ମହିମା ଗାଦି ସ୍ଥାପିତ ହେବାର ସ୍ଥିର ହେଲା ।

୧୮୭୬ ମସିହା ଫାଲଗୁନ ମାସ ଶୁକ୍ଳ ଶୁଭ ତିଥି ଓ ଶୁଭ ଦିନରେ ମହିମା ଗୋସାଇଁ ଯୋରନ୍ଦାର ପାଞ୍ଚ ହାତିଆ ଟୁଙ୍ଗୀରେ ଉପସ୍ଥିତ ହେଲେ । ଆମ୍ବଫଳ ଭୋଜନର ବ୍ୟବସ୍ଥା ହେଲା । ତା'ପରେ ସେ ପଦ୍ମାସନରେ ବସି ଆତ୍ମଯୋଗ ସମାଧି ଗ୍ରହଣ କଲେ। ତାଙ୍କର ଲୀଳାଖେଳା ଶେଷ ହୋଇଯିବା ସମ୍ବାଦ ଶୁଣି ସାଧୁ ଓ ଭକ୍ତମାନେ ନାମ ଭଜନ ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ମହିମା ଗାଦିର ଶୁଭ କରାଇଲେ ।

ମହିମା ଗୋସାଇଁ ଥିଲେ ଜିତେନ୍ଦ୍ରୀୟ । ସେ କୌଣସି ଜରା, ବାର୍ଦ୍ଧକ୍ୟ ବା ରୋଗର ଅଧୀନ ହୋଇ ନଥିଲେ। ତାଙ୍କଦ୍ୱାରା ଧର୍ମ ପ୍ରଚାର ଫଳରେ ଅସଂଖ୍ୟ ବ୍ୟକ୍ତି ଗୁରୁ ମହିମା ଗାଦିଠାରେ ସନ୍ନ୍ୟାସୀ ହୋଇ ରହିପାରିଛନ୍ତି ।






# ସନ୍ନ୍ୟାସ ପନ୍ଥୀମାନଙ୍କୁ ମହିମା ସ୍ୱାମୀଙ୍କ ଉପଦେଶ

ଜକାର ନୂତନ ଟୁଙ୍ଗୀରେ ମହିମା ଗୋସାଇଁ ଉପସ୍ଥିତ ହୋଇ ଭକ୍ତମାନଙ୍କୁ ଆଜ୍ଞା ଦେଇ କହିଥିଲେ, 'ସନ୍ନ୍ୟାସୀ ସିଦ୍ଧପନ୍ଥା ବଲ୍କଳ ବାନା ନନ୍ଦ ବାବାଙ୍କ ଠାରୁ ବନ୍ଦ ହୋଇଛି । ଆଉ ଏଣିକି ବଲ୍କଳବାନା ପ୍ରଦାନ କରାଯିବ ନାହିଁ । ଏବେ ସନ୍ନ୍ୟାସୀ ପନ୍ଥା ଗ୍ରହଣ କରି ଭକ୍ତମାନେ କୌପୀନ ଗ୍ରହଣ କରିବେ, ସେମାନେ ଦାସ ବାବା ଉପାଧି ଲାଭ କରିବେ ।

ସେଠାରେ ଉପସ୍ଥିତ ଥିବା ଅଣୀ ଜଣ ଶିଷ୍ୟଙ୍କୁ ମହିମା ସ୍ୱାମୀଙ୍କ ଆଜ୍ଞାରେ ସିଦ୍ଧ ବାଞ୍ଛାନିଧି ବାବା ସନ୍ନ୍ୟାସୀର ତତ୍ତ୍ୱ ବୁଝାଇ ଡ଼ୋର କୌପୀନ ବାନା ଅଢ଼େଇ ହାତ ପରିମିତ ପ୍ରଦାନ କଲେ ।

ମହିମା ସ୍ୱାମୀ କୌପୀନ ଧାରୀ ସନ୍ନ୍ୟାସୀମାନଙ୍କୁ ଆଜ୍ଞା ଦେଲେ, 'ତୁମେମାନେ ପରସ୍ପର ମଧ୍ୟରେ ଗୁରୁଜନ ଭାବେ ଶରଣମାନ୍ୟ ହୋଇ ଗୁରୁ ଭ୍ରାତୃ ଭାବେ ଧର୍ମ ନିୟମ ଅନୁଯାୟୀ ଧର୍ମକାର୍ଯ୍ୟ ଓ ଶୁଭ କାର୍ଯ୍ୟରେ ଯୋଗଦାନ କରିବ । ଯାହା କି

ସତ୍ୟ ଧର୍ମର ନିୟମ ଓ ଅପର ସନ୍ନ୍ୟାସୀମାନଙ୍କର କର୍ତ୍ତବ୍ୟ । ତାକୁ କଦାପି ଲଘଂନ କରିବ ନାହିଁ । ଏବେ ଯେଉଁମାନେ ସଂସାର ତ୍ୟାଗ କରି ଆସିବେ, ସେମାନେ ପ୍ରଥମେ ତ୍ୟାଗୀ ଅବସ୍ଥାରେ ନିଷ୍କାମ ହୋଇ ରହିବେ, ପରେ କୌପୀନ ବାନା ଧାରଣ କରି ସନ୍ନ୍ୟାସୀ ହେବେ' ।

ମହିମା ସ୍ୱାମୀ ସୁଯୋଗ ଦେଖି ବିଭିନ୍ନ ସ୍ଥାନରେ ସନ୍ନ୍ୟାସୀମାନଂକୁ ମହିମା ଧର୍ମର ନୀତି ଓ ନିୟମ ସଂପର୍କରେ ସୂଚନା ଦେଇଛନ୍ତି । ଯଥା - 'ମହାପ୍ରଭୁ ସତ୍ୟଧର୍ମ ସ୍ଥାପନାର୍ଥେ ମର୍ତ୍ତ୍ୟପୁରକୁ ବିରାଜମାନ କରିଛନ୍ତି । ସେ ବ୍ରହ୍ମ ଅବଧୂତ ଅତିଥି ଭାବେ ଭ୍ରମଣ କରି ଧର୍ମ ସ୍ଥାପନା କରିବେ । ଭକ୍ତମାନେ ତାଂକ ପ୍ରତି ଦୃଢ଼ ବିଶ୍ୱାଂସ ରଖି ସତ୍ୟ ଧର୍ମର ପ୍ରଚାର କରିବେ' ।

କାମ ରସିକ ଓ ରସିକାମାନେ ତାମ୍ବୁଳ ବା ପାନ ଖାଆନ୍ତି । ନିଷ୍କାମ ସନ୍ନ୍ୟାସୀମାନେ ପାନ ଖାଇ ପାରିବେ ନାହିଁ ।

ଗଞ୍ଜେଇ ଓ ଅଫିମ ଖିଆ ଲୋକଙ୍କୁ ପ୍ରଭୁ ଭୟ କରନ୍ତି । ତେଣୁ ସନ୍ନ୍ୟାସୀମାନେ ଏସବୁ ନିଶାଦ୍ରବ୍ୟ ସ୍ପର୍ଶ କରିବେ ନାହିଁ ।

ଗୃହୀ ମଣିଷକୁ ତା'ର ଭୁଲ ପାଇଁ ସାତଥର କ୍ଷମା ମିଳିପାରେ, କିନ୍ତୁ ସନ୍ନ୍ୟାସୀମାନଂକୁ ତାଂକର ଭୁଲପାଇଁ କ୍ଷମାନାହିଁ । ବିଭିନ୍ନ କୁତର୍କ ବିଦ୍ୟା ବଳରେ ଲୋକେ ଅସମ୍ଭବକୁଂ ସମ୍ଭବ କରିଦେଇ ପାରନ୍ତି । ସମସ୍ତ ଆଶ୍ଚର୍ଯ୍ୟ ବିଷୟ ଦେଖିଲେ ମଧ୍ୟ ସେଥିରେ ବିଚଳିତ ନହୋଇ ଏକ ଅଲେଖ ପରମ ବ୍ରହ୍ମଙ୍କ ବ୍ୟତୀତ ଅନ୍ୟ କାହାରିକୁ ପ୍ରଭୁ ବୋଲି ମାନିବ ନାହିଁ କି ଶିରନତ କରିବ ନାହିଁ ।

ବର୍ତ୍ତମାନ ବିଭିନ୍ନ ଜାତିକୁ ନେଇ ଯେପରି ଚାଲିଛି, ସମୟ ଆସିବ, ଉଚ୍ଚ ନୀଚ ଜାତିପ୍ରଥା ଉଠିଯିବ । ପ୍ରଭୁଂକ ହୁକୁମରେ, ମଣିଷ କେବଳ ପୁରୁଷ ଓ ନାରୀ ଦୁଇଟି ଜାତି ।

କୌଣସି ଗୃହରୁ ଦୁଇଥର ଅନ୍ନଭିକ୍ଷା କରାଯିବ ନାହିଁ । ଭକ୍ତମାନେ ଇଚ୍ଛାକଲେ, ଆଉଥରେ ଫଳମୂଳ ଜଳଖିଆ ଦେଇ ପାରନ୍ତି ।

ଆଜିଠାରୁ କୌଣସି ନାରୀ ତ୍ୟାଗୀ ହୋଇ ଆସି ସନ୍ନ୍ୟାସିନୀ ହେବେ ନାହିଁ । ସେମାନେ ଗୃହରେ ରହି ପ୍ରଭୁଙ୍କଠାରେ ଭକ୍ତି ରଖି ସାଧୁ ଓ ଅତିଥି ସତ୍କାର ସେବା କାର୍ଯ୍ୟ କରିବେ । ନିଜ ସ୍ୱାମୀ ଆଜ୍ଞା ପାଳନ କରିବେ । ପତି ପତ୍ନୀ ଉଭୟେ ପ୍ରଭୁଙ୍କର ଦାସ ଦାସୀ ଭାବେ ଭକ୍ତ ହୋଇ ପାରିବେ ।

ଯଦି କୌଣସି ନାରୀ ହୃଦୟରେ ବୈରାଗ୍ୟ ଜାତ ହୁଏ, ତେବେ ସେ ଗୃହରେ ବା ନିଜ ଗ୍ରାମରେ ଅଲଗା ନିଷ୍କାମୀ ଭାବେ ରହି ବ୍ରହ୍ମ ଉପାସନା କରି ପାରିବ । ଯଦି ସେମାନେ ସ୍ୱେଚ୍ଛାରେ ବିଚରଣ କରନ୍ତି, ତେବେ ତାଂକୁ ସାଧ୍ୱୀ ହିସାବରେ ଗ୍ରହଣ କରାଯିବ ନାହିଁ । ସନ୍ନ୍ୟାସ ପନ୍ଥାରେ ମାତାମାନେ ସନ୍ନ୍ୟାସିନୀ ହେଲେ, ସନ୍ନ୍ୟାସ ପନ୍ଥା କଳଙ୍କିତ ହୋଇଯିବ' ।

ନୃସିଂହ ବାବାଂକୁ ବଳ୍କଳ ବାନା ପ୍ରଦାନ ସମୟରେ ମହିମା ସ୍ୱାମୀ ଗୋବିନ୍ଦ ବାବାଂକୁ ଉପଦେଶ ଦେଇଥିଲେ -"ପ୍ରଭୁଙ୍କ ଆଦେଶରେ ମହିମା ଧର୍ମରେ ଗୁରୁ ଶିଷ୍ୟର ଭେଦ କଳ୍ପନା ରଖାଯିବ ନାହିଁ । କେହି କାହାରିକୁ ନ୍ୟୁନାଧିକ କଳ୍ପନା କରିବେ ନାହିଁ । କେହି ବ୍ୟକ୍ତି ପ୍ରଥମେ ସନ୍ନ୍ୟାସୀ ହୋଇ ପରେ ଯଦ୍ୟପି ଧର୍ମ ନିନ୍ଦିତ କାର୍ଯ୍ୟରେ ରତ ହୁଏ, ତାହାହେଲେ ତାଙ୍କ ପରେ ଦୀକ୍ଷିତ ହୋଇଥିବା ସନ୍ନ୍ୟାସୀ ତାଂକୁ ସମାଜରୁ ବହିଷ୍କାର କରି ସ୍ୱୟଂ ସନ୍ନ୍ୟାସ ପଦରେ ସୁଦୃଢ଼ ରହିବେ । ଅନ୍ୟାନ୍ୟ ସଂପ୍ରଦାୟରେ ମଠ ବାଡ଼ି କରି ଭୋଗ ବିଳାସରେ ରହି ମହନ୍ତ ଅଧିକାରୀମାନେ ଯେପରି ସନ୍ନ୍ୟାସ ନୀତିରୁ ଭ୍ରଷ୍ଟ ହୋଇ କଳଙ୍କିତ ହେଉଛନ୍ତି, ଆମର ସନ୍ନ୍ୟାସ ପନ୍ଥାରେ ସେପରି ରହିବ ନାହିଁ" । ଜମି, ଖଞ୍ଜା, ମଠ ବାଡ଼ି କରି ରହିବା କାର୍ଯ୍ୟକୁ ମହିମା ଧର୍ମ ସଂପୂର୍ଣ୍ଣ ବିରୁଧାଚରଣ କରେ ।

ମହିମା ପ୍ରଭୁଙ୍କ ବ୍ୟତୀତ ଅନ୍ୟ କେହି ଏହି ଧର୍ମ ସମାଜରେ ଗୁରୁ, କର୍ତ୍ତା ଓ ଠାକୁର ପଣିଆଁ ପ୍ରଦର୍ଶନ କରି ପାରିବେ ନାହିଁ । ଯଦି କେହି ଏଭଳି ପ୍ରକାଶ କରେ, ତେବେ ତାହାର ଗର୍ବ ଆପେ ଆପେ ଚୂର୍ଣ୍ଣ ହୋଇଯିବ ।

ସନ୍ନ୍ୟାସୀମାନେ ପରସ୍ପରଠାରେ ଅଭେଦ ଭାବ ରଖିବେ । କେହି କେବେ ଅଭିମାନ ଅହଂକାର ରଖିବେ ନାହିଁ । ଭବିଷ୍ୟତରେ ଯେଉଁମାନେ ଏହି ସନ୍ନ୍ୟାସ ପନ୍ଥା

ଗ୍ରହଣ କରିବେ, ତାଂକ ସହିତ ଅଭେଦ ଆଚ଼ରଣ କରିବାକୁ ହେବ ।

ଯେଉଁ ବ୍ୟକ୍ତି ସନ୍ନ୍ୟାସୀ ହୋଇ କାମିନୀ କାଞ୍ଚନରେ ଆବଦ୍ଧ ରହେ, ତାଂକଠାରୁ ସନ୍ନ୍ୟାସୀର ଡ଼ୋର କୌପୀନ ବା ଭେକ ବଲ୍କଳ ଭୂଷଣ କାଢ଼ି ନିଆଯିବ ।

ଯେଉଁ ଦ୍ରବ୍ୟ ପ୍ରଭୁଙ୍କୁ ସ୍ମରଣ କରି ଓ ଭିକ୍ଷା ମାଗି ଭୋଜନ କରିବାକୁ ହୁଏ, ତାହାକୁ "ଭିକ୍ଷା" କୁହାଯିବ । ସେହି ଦ୍ରବ୍ୟ ପ୍ରଭୁ ଅଲେଖ ପରଂବ୍ରହ୍ମଙ୍କୁ ଅର୍ପଣ କରି ଅନ୍ୟାନ୍ୟ ସନ୍ନ୍ୟାସୀମାନଙ୍କ ମୁଖରେ ଭୁଞ୍ଜାଇ ତାପରେ ଅବଶେଷକୁ ସ୍ୱୟଂ ସନ୍ନ୍ୟାସୀ ଗ୍ରହଣ କରିବେ । ଏକପତ୍ର ଏକମେଳ ଏବଂ ଏକ ମୃତ୍ତିକା ପାତ୍ରରେ ନଚ଼େତ୍ ଅସୁବିଧା ସ୍ଥଳେ ପୃଥକ ପାତ୍ରରେ ଭିକ୍ଷାଦ୍ରବ୍ୟ ରଖି ପରସ୍ପରକୁ ଖୋଇଦେବେ । ଏହାଦ୍ୱାରା ବିକାର ଭାବ ଓ ଉଚ୍ଚ ନୀଚ଼ ଭାବ ରହିବ ନାହିଁ ।

ଯଦି କେବେ କୌଣସି ସନ୍ନ୍ୟାସୀ ଧର୍ମର ଗର୍ହିତ କର୍ମ କରେ, ତା'ସହିତ କେହି ଶରଣ ଓ ଭିକ୍ଷା କରିବେ ନାହିଁ । ତା' ସହିତ ଏକ ଆସନରେ ବସିବେ ନାହିଁ । ଯଦି ସେ ସାମାନ୍ୟ ଧର୍ମନୀତି ଭଂଗ କରିଥାଏ, ତେବେ ସେ କ୍ଷମା ପ୍ରାର୍ଥନା କରି ନିଜର ଦୋଷ ମାର୍ଜନ କରି ପାରିବେ । ଗୁରୁତର ଦୋଷରେ ଅର୍ଥାତ କାମିନୀ କାଂଚ଼ନ ଦୋଷରେ ଦୂଷିତ ହୋଇ ଯେଉଁ ସନ୍ନ୍ୟାସୀ ଦୋଷୀ ହେବ, ସେ ବ୍ୟକ୍ତିକୁ ଆଉ ସନ୍ନ୍ୟାସୀ ସମାଜରେ ସ୍ଥାନ ଦିଆ ଯିବନାହିଁ ।

ସନ୍ନ୍ୟାସୀ ବେଶ ଧାରଣ କରି ସନ୍ନ୍ୟାସ ଯୋଗରେ ଯିଏ ନିଷ୍ଠା ନରଖିବ, ହିଂସା, କ୍ରୋଧ ବା ଗର୍ବରେ ଯିଏ ଜର୍ଜରିତ ହେବ, ସେପରି ଅହଂକାରୀ ମଣିଷ କୌଣସି ସତ୍ ମାର୍ଗରେ ଚ଼ଳି ପାରିବ ନାହିଁ । ସେ ମୃତ୍ୟୁପରେ ମଧ୍ୟ ସଦ୍‌ଗତି ଲାଭ କରି ପାରିବ ନାହିଁ । ନାରୀ ପ୍ରତି ଆସକ୍ତି ଥିବା ସନ୍ନ୍ୟାସୀ ଗୃହସ୍ଥ ଭକ୍ତଠାରୁ ଶତଗୁଣରେ ନ୍ୟୂନ ଅଟେ । ଯେଉଁ ସନ୍ନ୍ୟାସୀ ଲୋକମାନଙ୍କୁ ଆଡ଼ମ୍ବର ଦେଖାଇବା ଉଦ୍ଦେଶ୍ୟରେ ବାହାରେ ସନ୍ନ୍ୟାସୀ ଭାବ ଦେଖାଏ, କିନ୍ତୁ ଭିତରେ ଖଳ କୁଟିଳତା ଆଦିରେ ରତଥାଏ, ସେ ନିଷ୍ଠୁର ମଣିଷକୁ କେହି ସନ୍ନ୍ୟାସୀ ବୋଲି ଗ୍ରହଣ କରିବେ ନାହିଁ ।

ସାଧୁ ସନ୍ନ୍ୟାସୀମାନଙ୍କ ସହିତ ବିଚ଼ାର ନକରି, ବିନା ସାଧନା ଭଜନରେ ଯିଏ ନିଜ ଇଛାରେ ସନ୍ନ୍ୟାସୀ ହୋଇ ପର ପାକରେ ଅନ୍ନ ଭୋଜନ କରିବ, ସେ ଚ଼ିର ଋଣୀ ହୋଇ ରହିବ । ଅନ୍ନ ଦାତାମାନଙ୍କର "ଭାରବାହୀ" ପଶୁରୂପେ ଜନ୍ମ ହୋଇ ତାଂକର ଋଣ ପରିଶୋଧ କରିବ ।

ଜଗତର ମଂଗଳ ନିମନ୍ତେ ସନ୍ନ୍ୟାସ ସିଦ୍ଧ ସାଧୁପନ୍ଥା ସୃଷ୍ଟି ହୋଇଛି । ଜଗତ ବାସୀଂକୁ ସନ୍ନ୍ୟାସୀମାନେ ମହିମା ଧର୍ମର ଶିକ୍ଷା ଦୀକ୍ଷା ଓ ଉପଦେଶ ଦେବା ଉଚ଼ିତ । ଏଥିରେ ଆଳସ୍ୟ କରିବା ସନ୍ନ୍ୟାସୀମାନଙ୍କ ପାଇଁ ଦୋଷଯୁକ୍ତ ହେବ ।

ସନ୍ନ୍ୟାସୀମାନେ ଲୋକମାନଙ୍କୁ ଅସତ ମାର୍ଗରୁ ଫେରାଇ ଆଣି ତାଂକୁ ସତଶିକ୍ଷା ପ୍ରଦାନ କରିବେ । ଲୋକମାନେ ତାଂକର ଜ୍ଞାନାଜ୍ଞାନକୃତ ପାପ ଗୁଡ଼ିକ ସନ୍ନ୍ୟାସୀଂକ ଆଗରେ ପ୍ରକାଶ କରିବେ । ତାଙ୍କର ପାପ ଧୋଇ ହେବା ଉଦ୍ଦେଶ୍ୟରେ ତାଙ୍କୁ ସତକର୍ମ ଅର୍ଥାତ୍ ମହିମା ମହା ପ୍ରସାଦ ଘୃତ ଆହୁତି ପ୍ରଭୃତି କାର୍ଯ୍ୟ କରିବାକୁ ହେବ । ସେମାନଂକୁ ସତସଙ୍ଗରେ ଚ଼ଳାଇବେ । ପ୍ରତ୍ୟେକ ବ୍ୟକ୍ତି ପ୍ରଭୁଙ୍କୁ ସ୍ମରଣ ପୂର୍ବକ ଶୂନ୍ୟ ଆକାଶକୁ ଚ଼ାହିଁ ଦୃଢ଼ ପ୍ରତିଜ୍ଞା କରିବେ, ଯେପରି ପୁଣି ଥରେ ପାପ କାର୍ଯ୍ୟରେ ଆଉ ଲିପ୍ତ ହେବେନାହିଁ । ଗୃହସ୍ଥମାନଙ୍କୁ ଗାର୍ହସ୍ଥ୍ୟ ନିୟମାନୁସାରେ ମହିମା ଧର୍ମ ଉପଦେଶ ପ୍ରଦାନ କରିବେ ।

ଯେଉଁମାନେ ଗୃହତ୍ୟାଗୀ ସେମାନଙ୍କୁ ସନ୍ନ୍ୟାସର ପ୍ରଣାଳୀ ବୁଝାଇ ସତ୍ୟଧର୍ମ ଉପଦେଶ ଦେବେ । ନିଜେ କୌଣସି ଧର୍ମନୀତି ଲଙ୍ଘଂନ କରିବେ ନାହିଁ । ସର୍ବଦା ଆନନ୍ଦ ମନରେ ବ୍ରହ୍ମାନନ୍ଦରେ ଚ଼ିତ୍ତ ରଖି ଭ୍ରମଣ କରିବେ ।

ଆଉଥରେ ମହିମା ସ୍ୱାମୀ ଗୋବିନ୍ଦ ବାବାଂକୁ ଡ଼ାକି କହିଥିଲେ, 'ଜଗତ ମଧ୍ୟରେ ଯେତେ ବିଷ୍ଣୁ ଅବତାର ହୋଇଛନ୍ତି, ସେମାନେ ସକାମ ଖେଳା-ଲୀଳା କରି ଯେଉଁ କୀର୍ତ୍ତି ପ୍ରକାଶ କରିଥିଲେ, ସେହି ଅନୁସାରେ ଲୋକେ ତାଂକ ନାମ ଓ କୀର୍ତ୍ତିମାନ ସ୍ଥାପନା କରିଛନ୍ତି । ପ୍ରଭୁ ପରଂବ୍ରହ୍ମଂକର ଉପାସନା ମାର୍ଗକୁ ସେମାନେ ଭୁଲି ଯାଇ ନାନା ଦେବଦେବୀ ପ୍ରତିମା ପୂଜାରେ ଲାଗି ରହିଛନ୍ତି । ତେଣୁ ସେମାନେ ପରମ ସଦ୍‌ଗତି ଲାଭ କରି ପାରୁ ନାହାନ୍ତି । ଏଥିପାଇଁ ମହିମା ମହାପ୍ରଭୁ ପ୍ରବୁଦ୍ଧ ବୁଦ୍ଧ ମହିମା ସ୍ୱରୂପରେ

ଅବତୀର୍ଣ୍ଣ ହୋଇ ସତ୍ୟଧର୍ମ ସ୍ଥାପନା ପୂର୍ବକ ନିଷ୍କାମ ଲୀଳା ଖେଳା ବିସ୍ତାର କରୁଛନ୍ତି। ଏହି ଧର୍ମରେ ମହିମା ପ୍ରଭୁଙ୍କ ନାମ ଧାମ ଚିରକାଳକୁ ଜଗତରେ ସୁପ୍ରତିଷ୍ଠିତ ହୋଇ ରହିବ। ଢେଙ୍କାନାଳରେ ପ୍ରଭୁଙ୍କର ମହିମା ଧାମ ପ୍ରତିଷ୍ଠା ହେବ। ସେହି ଧାମ ଦର୍ଶନ କରି ପ୍ରାଣୀମାନେ ଧର୍ମ ନୀତିରେ ଅଗ୍ରସର ହେବେ। ଅନ୍ୟାନ୍ୟ ଧାମ ଦର୍ଶନରେ ପ୍ରାଣୀମାନେ ଅନେକ ରାଜସିକ କାର୍ଯ୍ୟରେ ରତ ହୋଇ ଲକ୍ଷ୍ୟଭ୍ରଷ୍ଟ ହେଉଛନ୍ତି। ତେଣୁ ଭକ୍ତମାନେ ଅନ୍ୟ ତୀର୍ଥ ଦର୍ଶନରେ ଯିବେନାହିଁ। ଜଗତର ଉପକାରାର୍ଥେ ଯୋରନ୍ଦାଠାରେ, ମହିମା ଗାଦି ଧୂନିଘର ଓ ମହିମା ମହା ପ୍ରସାଦ ପ୍ରଭୃତି ହେବ"।

ମହିମା ସ୍ୱାମୀ ଧୂନି ମନ୍ଦିରର ଧୂନି ସ୍ଥାପନ ସଂପର୍କରେ ଆଜ୍ଞା ଦେଇଛନ୍ତି- 'ସାଧୁ ସନ୍ନ୍ୟାସୀମାନଙ୍କ ଧୂନି ଗୋଟିଏ ରାତିରୁ ଅଧିକ ସମୟ ରହିବ ନାହିଁ। ସେହି ଧୂନିକୁ ଅଟିଆ ବା ଯାମୁକିରେ ରଖି ଧୂନି ଛପାଇ ସାଙ୍ଗରେ ତାକୁ ନେବାକୁ ହେବ। ଅନ୍ୟ ସ୍ଥାନରେ ଧୂନି ଲଗାଇବା ବେଳେ ଏହି ଅଗ୍ନିରୁ ଧୂନି ଲଗାଯିବ। ଅକସ୍ମାତ୍ ଧୂନି ଲିଭିଗଲେ, ଝକମକି ପଥର ଦ୍ୱାରା ବା କାଷ୍ଠ ଘର୍ଷଣ ଦ୍ୱାରା ଅଗ୍ନିଜାତ କରି ଧୂନି ସ୍ଥାପନ କରିବାକୁ ହେବ। ଏହି ନିୟମ ସର୍ବଦା ସନ୍ନ୍ୟାସ ସମାଜରେ ପ୍ରଚଳିତ ରହିବ"।

ଧୂନିକୁ ପାଦସ୍ପର୍ଶ କରାଯିବ ନାହିଁ। କୌଣସିଠାରେ ନୂତନ ଟୁଙ୍ଗୀରେ ଧୂନି ସ୍ଥାପନ ଓ ଅଖଣ୍ଡବତୀ ଲଗାଇଲେ, ଏହି ଶୁଦ୍ଧ ଅଗ୍ନି ଦ୍ୱାରା ଆରମ୍ଭ କରାଯିବ। ଏହି ଅଗ୍ନିକୁ ଫୁଙ୍କାଯିବ ନାହିଁ। ଧୂନି ଅଗ୍ନିରେ କୌଣସି ପ୍ରକାର ଖାଦ୍ୟ ପାକ କରାଯିବ ନାହିଁ। ଏହି ପବିତ୍ର ଅଗ୍ନିକୁ ଅନ୍ୟ କୌଣସି କାର୍ଯ୍ୟରେ ବ୍ୟବହାର କରିବା ମନା।

ଜାତିକୁ ନେଇ ଭକ୍ତମାନେ ମହିମା ସ୍ୱାମୀଙ୍କୁ ପ୍ରଶ୍ନ ପଚାରିବାରୁ ସେ ଉତ୍ତର ଦେଇ କହିଲେ, "ଯାହାର ଏହି ମହିମା ଧର୍ମ ପ୍ରତି ବିଶ୍ୱାସ ରହିଛି, ତାହାର ଆଉ ଜାତି ପ୍ରଭୃତିରେ ଭୟ ନାହିଁ। ଜାତି ଖୋଜିଲେ ମୁକ୍ତି ନାହିଁ, ମୁକ୍ତି ଖୋଜିଲେ ଜାତି ନାହିଁ"।

ମହିମା ଧର୍ମର ପ୍ରଚାର ପାଇଁ ନିର୍ମାଣ କରା ଯାଉଥିବା ଟୁଙ୍ଗୀରେ ନାରୀ କିମ୍ବା ପୁରୁଷର ମୂର୍ତ୍ତି ବା ରୂପରେଖ ରଖାଯିବ ନାହିଁ।

ଏ'କଥାଟିକୁ ମହିମା ସ୍ୱାମୀ ସପନପୁର ଟୁଙ୍ଗୀ ରେ ଭକ୍ତମାନଙ୍କୁ ପ୍ରକାଶ କରିଥିଲେ।

"ବୃଦ୍ଧ ବୟସରେ ସନ୍ନ୍ୟାସୀ ହେବା, ପକ୍ୱରମ୍ଭା ଫଳର ରସହୀନ ତ୍ୱକ୍ ସଦୃଶ ଅଟେ। ତେଣୁ ବୃଦ୍ଧମାନେ ସନ୍ନ୍ୟାସ ପନ୍ଥା ଗ୍ରହଣ ନକରି ଗାର୍ହସ୍ଥ୍ୟ ଧର୍ମ ପାଳନ କରିବେ"। ସେମାନେ ତାଂକର ପୁତ୍ରମାନଙ୍କୁ ସନ୍ନ୍ୟାସୀ କରାଇ ପାରନ୍ତି।

ଏକଥା ମହିମା ସ୍ୱାମୀ ମହୀଧରପୁର ଟୁଙ୍ଗୀ ରେ ଜଣେ ବୃଦ୍ଧକୁ କହିଥିଲେ।

ଭିଭିନ୍ନ ସ୍ଥାନ ଭ୍ରମଣ କରି ମହିମା ଧର୍ମର ପ୍ରଚାର କରିସାରି ମହିମା ସ୍ୱାମୀ ଢେଙ୍କାନାଳକୁ ଫେରି ଥାଆନ୍ତି। ସାଥୀରେ ଥିବା ଭକ୍ତ ଓ ବାବାମାନେ ସୂର୍ଯ୍ୟତାପ ହେତୁ ବଡ଼ କଷ୍ଟ ପାଉଥା'ନ୍ତି। ହାତରେ କିଏ ଖଣ୍ଡିଏ ତାଳପତ୍ର ଧରିଥାଏ ତ, ଆଉ କିଏ କେରାଏ ଘାସ ଧରି ସୂର୍ଯ୍ୟତାପରୁ ନିଜକୁ ରକ୍ଷା କରିବାକୁ ଚେ଼ଷ୍ଟା କରୁଥା'ନ୍ତି। ସେତେବେଳ ପର୍ଯ୍ୟନ୍ତ ସନ୍ନ୍ୟାସୀମାନେ ହାତରେ ଖଣ୍ଡିଏ ବେତ ଓ ଧୂନି ଅଟିଆ ବା ଜାମୁକି ବ୍ୟତୀତ ଅନ୍ୟ କୌଣସି ପଦାର୍ଥ ଧାରଣ କରୁ ନଥିଲେ। ମହିମା ସ୍ୱାମୀ ମଧ୍ୟ ସେହିପରି କେବଳ ଧୂନି ଯାମୁକିରେ ଅଗ୍ନି ଧରି ବୁଲୁଥା'ନ୍ତି ।

ଥରେ ମହିମା ସ୍ୱାମୀ ଭ୍ରମଣ କରୁଥିବା ସମୟରେ ଦେଖିଲେ, ଗୋଟାଏ ଜାଗାରେ ତାଳ ବାହୁଙ୍ଗା ଦୁଇ ଭାଗରେ ଭଙ୍ଗା ହୋଇ ଗୁଡ଼ାଏ ରଖାଯାଇଛି। ତାକୁ ସ୍ଥାନୀୟ ଲୋକେ 'ପଲାଣ୍ଟି' ବୋଲି କହୁଥା'ନ୍ତି। ସେ ବାବାମାନଙ୍କୁ ଚା଼ହିଁ କହିଲେ, 'ଗଛର ଡ଼ାଳ ଓ ଘାସବିଡ଼ା ବଦଳରେ ଏହି ପଲାଣ୍ଟିରୁ ଖଣ୍ଡିଏ ଲେଖା ଧରି ଖରା ବର୍ଷା ଦାଉରୁ ନିଜ ଶରୀରକୁ ରକ୍ଷାକର'। ସେହିଦିନଠାରୁ ସନ୍ନ୍ୟାସୀ ବାବାମାନେ ତାଳପତ୍ର ବାହୁଙ୍ଗାରେ ତିଆରି ଛତ୍ରୀ ବ୍ୟବହାର କରି ଆସୁଛନ୍ତି। କିନ୍ତୁ ମହିମା ସ୍ୱାମୀ ନିଜେ କଦାପି ସେଭଳି ଛତ୍ରୀ ବ୍ୟବହାର କରି ନାହାନ୍ତି ।

ଥରେ ମହିମା ସ୍ୱାମୀ ଭ୍ରମଣ କରୁଥିବା ବେଳେ ତାଂକୁ କେତେଜଣ ସାଧାରଣ ଲୋକେ ନିନ୍ଦା କରୁଥିବାର ସେ ଶୁଣି ପାରିଲେ। ଭକ୍ତ ଓ ଅନ୍ୟ ସନ୍ନ୍ୟାସୀମାନଙ୍କୁ ସେ ଉପଦେଶ ଦେଇ କହିଲେ, 'ନିନ୍ଦା କରିବା ଫଳରେ ଶୂନ୍ୟ ପ୍ରଭୁଙ୍କର କୌଣସି କ୍ଷତି ହୁଏ ନାହିଁ। ଜଗତ ଲୋକେ ଯେତେ ନିନ୍ଦା କରିବେ, ସେତେ ଭଲ। ନିନ୍ଦା ସହିବା ହେଉଛି, ସାଧୁ, ସନ୍ନ୍ୟାସୀ ଓ ଜ୍ଞାନୀମାନଙ୍କର ପ୍ରଧାନ କର୍ତ୍ତବ୍ୟ'।

ଅପର୍ତ୍ତି ଦାସ ବାବାଂକୁ ଉପଦେଶ ଦେଇ ମହିମା ସ୍ୱାମୀ କହିଥିଲେ, 'ଯେ କୌଣସି କାଳ ଭୟ ଆସି ଉପସ୍ଥିତ ହେଲେ, 'ମହିମା ଅଲେଖ ବ୍ରହ୍ମ' ତ୍ରିବାର ଉଚ୍ଚସ୍ୱରରେ ଗାୟନ କରି ତିନିଥର ତାଳି ମାରିଦେଲେ; ସମସ୍ତ ଭୟ ଦୂର ହୋଇଯିବ। କୌଣସି ଭକ୍ତ ଲୋକର ଅଙ୍ଗରେ ପୀଡ଼ା ହୋଇଥିଲେ, ସେ ଯଦି ଶରଣ ପ୍ରାପ୍ତ ହୁଏ, ତେବେ ସନ୍ନ୍ୟାସୀମାନେ ତା'ମସ୍ତକରେ ତିନିଥର ତାଳି ମାରିଦେଇ ପ୍ରଭୁଙ୍କ ଆଜ୍ଞା ଉପଦେଶ ଦେବେ। ପ୍ରଭୁ ତା'ର ଦୁଃଖ ମୋଚନ କରିବେ। ଯେଉଁ ବ୍ୟକ୍ତି ସର୍ବଦା ଅବିଚଳିତ ହୋଇ କାୟ ମନୋବାକ୍ୟରେ ଏକ ପ୍ରଭୁ ପରଂବ୍ରହ୍ମଙ୍କୁ ସ୍ମରଣ, ଭଜନ ଓ ଚିନ୍ତନ କରୁଥିବେ, ସେ ଭକ୍ତ  ନିଶ୍ଚୟ ପ୍ରଭୁଙ୍କ ଅଭୟ ପାଦକୁ ପ୍ରାପ୍ତ ହେବ। ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ"।

"ଜଙ୍ଗଲରେ ଫଳମୂଳ ଖାଇ ରହିବା ସନ୍ନ୍ୟାସୀର ତପସ୍ୟା ନୁହେଁ ବା କର୍ତ୍ତବ୍ୟ ନୁହେଁ। ଅବଧୂତ ଭାବେ ଦେଶ ବିଦେଶ ଭ୍ରମଣ କରି ସତ୍ୟ ଧର୍ମ ପ୍ରଚାର ପୂର୍ବକ ଅଙ୍ଗରେ ଶୀତ,ଉଷ୍ଣ, ସୁଖ, ଦୁଃଖ, ମାନ, ଅପମାନ, ନିନ୍ଦା ଓ ସ୍ତୁତି ପ୍ରଭୃତିକୁ ସହ୍ୟ କରିବା ହିଁ ସନ୍ନ୍ୟାସୀର ପ୍ରକୃତ ତପସ୍ୟା। ବଣରେ ଏକ ସ୍ଥାନୀୟ ହୋଇ ଅଜଗର ତୁଲ୍ୟ ପଡ଼ି ରହିବା ବିବେକୀ ସନ୍ନ୍ୟାସୀଙ୍କ ପାଇଁ  କଦାପି ଉଚିତ ନୁହେଁ"।

ବିଭିନ୍ନ ଭବିଷ୍ୟତ ମାଳିକାକୁ ପାଠ କରିବାକୁ ମହିମା ସ୍ୱାମୀ ବାରଣ କରି ଯାଇଛନ୍ତି। ସେ କହିଛନ୍ତି - 'ଯଦି କେହି ପ୍ରାଣୀ ଦୋଷ କରେ, ସିଏ ଦଣ୍ଡ ପାଉ। ନିର୍ଦ୍ଦୋଷ ପ୍ରାଣୀ କାହିଁକି ଦଣ୍ଡ ପାଇବ ? କବି ଲେଖକ ଓ ମହା ପୁରୁଷମାନେ ପ୍ରଭୁଙ୍କ ନିକଟରେ ଜଗତର ରକ୍ଷା ପାଇଁ ପ୍ରାର୍ଥନା କରିବା ଉଚିତ । ସେ କଥା ନକରି ଅଯଥାରେ ଅନ୍ୟମାନଙ୍କୁ ମିଥ୍ୟା ଭୟରେ ଆତଙ୍କିତ କରିବା କୌଣସି ଲୋକର ଅଧିକାର ନାହିଁ। ତେଣୁ ଭବିଷ୍ୟ ମାଳିକା ଭଳି ପୁସ୍ତକ ପାଠ କରି ମନକୁ ବିଭ୍ରାନ୍ତ କରିବା ଉଚିତ ନୁହେଁ ।

ଯୋରନ୍ଦାଠାରେ ଥାଇ ଥରେ ମହିମା ସ୍ୱାମୀ ଭକ୍ତ ଦାମ ବେହେରା ଉପରେ ପ୍ରସନ୍ନ ହୋଇ କହିଲେ, 'ତୁମର ଇଚ୍ଛା କ'ଣ ମାଗିନିଅ' । ଦାମ ବେହେରା ନମ୍ର ହୋଇ କହିଲେ - 'ପ୍ରଭୁ! ଆମେ ଯେମିତି ପ୍ରତିଦିନ ଆପଣଙ୍କ ଧାମ ଦର୍ଶନ ଲାଭ

କରିପାରିବୁ, ଏତିକି ଦୟା ହେଉ'।

ମହିମା ସ୍ୱାମୀ କହିଲେ, 'ଆଚ୍ଛା ହେଉ। ପନ୍ଦର ଦିନ ପରେ ତୁମର ମନୋବାଞ୍ଛା ନିଶ୍ଚୟ ପୂରଣ ହେବ। କିନ୍ତୁ ଏହି ଯୋରନ୍ଦା ଗ୍ରାମରୁ କେହି ତ୍ୟାଗୀ ହୋଇ ସାଧୁ ସନ୍ନ୍ୟାସୀ ହେବେ ନାହିଁ' ।

ବେନ୍ତପୁର ଗ୍ରାମରେ କେତେଜଣ ବ୍ରାହ୍ମଣ ମହିମା ଧର୍ମରେ ଦୀକ୍ଷିତ ହୋଇଥା'ନ୍ତି। ମହିମା ସ୍ୱାମୀ ସେହି ଗ୍ରାମରେ ପହଞ୍ଚିବାରୁ ବ୍ରାହ୍ମଣମାନେ ତାଂକଠାରୁ ଭିକ୍ଷା ଗ୍ରହଣ କରିବାକୁ ଅନୁରୋଧ କଲେ।

ମହିମା ସ୍ୱାମୀ ସେମାନଂକୁ କହିଲେ,- 'ବ୍ରାହ୍ମଣମାନଂକ ଗୃହରେ ସନ୍ନ୍ୟାସୀମାନଂକର ଭିକ୍ଷା ଗ୍ରହଣ ହୋଇ ପାରିବ ନାହିଁ। ସେମାନେ ଯେତେବେଳେ ଜାତିପ୍ରଥାକୁ ସଂପୂର୍ଣ୍ଣ ଭୁଲି ଅନ୍ୟ ଦେବଦେବୀଙ୍କ ପୂଜା ବନ୍ଦ କରିବେ ଏବଂ କେବଳ ପରଂବ୍ରହ୍ମଙ୍କ ନିକଟରେ ନିଜକୁ ସମର୍ପଣ କରିବେ, ତେବେ ଯାଇ ତାଂକ ଗୃହରୁ ଆମେ ଭିକ୍ଷା ଗ୍ରହଣ କରି ପାରିବୁ'।

ଗୋବିନ୍ଦ ବାବାଙ୍କ ଅନୁରୋଧ ରକ୍ଷା କରି ମହିମା ସ୍ୱାମୀ ମହିମା ଧର୍ମର ନୀତି ନିୟମ ସଂପର୍କରେ ବୁଝାଇଥିଲେ। 'ମହିମା ଧର୍ମରେ ସନ୍ନ୍ୟାସ ପନ୍ଥା ଓ ଗୃହସ୍ଥ ପନ୍ଥା ନାମରେ ଦୁଇଟି ମାର୍ଗ ରହିବ। ପ୍ରଚ୍ଳିତ ଦେବଦେବୀ ଆରାଧନା ଓ ଓଁକାର ଆଦି ମନ୍ତ୍ର ଯନ୍ତ୍ରର ସାଧନାକୁ ତ୍ୟାଗ କରିବାକୁ ପଡ଼ିବ। ହୋମ, ଯାଗ, ଯଜ୍ଞ,ଶ୍ରାଦ୍ଧ, ପିଣ୍ଡଦାନ, ବ୍ରତ ଉପବାସ, ତୀର୍ଥାଟନ ଓ ଭୂତ ପ୍ରେତାଦିର ପୂଜା ଇତ୍ୟାଦି ତ୍ୟାଗ କରିବାକୁ ପଡ଼ିବ। କେବଳ ନିର୍ଗୁଣ ଅଲେଖ ପରଂବ୍ରହ୍ମଙ୍କଠାରେ କାୟ ମନୋବାକ୍ୟରେ ଶରଣ ପ୍ରାପ୍ତ ହେବାକୁ ପଡ଼ିବ। ଯେଉଁମାନେ ମହିମା ଧର୍ମରେ ଦୀକ୍ଷିତ ହେବେ, ସେ ଶରୀର ଶୋଧନ ପାଇଁ ପ୍ରତିଦିନ ପ୍ରାତଃ କାଳରେ ଶଯ୍ୟା ତ୍ୟାଗ କରି ଅଙ୍ଗରେ ମାଈ ବାଛୁରୀର ଗୋମୟ ଲଗାଇବେ, ଶୁଦ୍ଧ ମାଟିଦ୍ୱାରା ଦାନ୍ତ ଘଷିବେ, ଶୁଦ୍ଧ ଜଳରେ ସ୍ନାନ କରିବେ। ଶୁଦ୍ଧ ପାତ୍ରରେ ମାଈ ବାଛୁରୀର ଗୋମୟ, ଗୋମୂତ୍ର ଓ ଜଳ ଏକତ୍ର ଗୋଳି ପୂର୍ବାଭିମୁଖରେ ଉପରକୁ ଟେକି ପ୍ରଭୁଙ୍କୁ ସ୍ମରଣ କରିବେ। ମଥା ଲାଗିଥିବା ସ୍ଥାନରୁ ପ୍ରଭୁ ପଦରେଣୁ

ସାତଥର ଆଣି ସେଥିରେ ପକାଇବେ । ଏକୋଇଶି ଥର ପବିତ୍ରକୁ କରପତ୍ରରେ ପାଇ ଶୁଦ୍ଧି ହେବେ । ସେଥିରୁ କିଛି ନେଇ ମସ୍ତକ ଓ ଶରୀରରେ ସିଞ୍ଚି ହେବେ । ନୂତନ ଗୈରିକ ବସ୍ତ୍ର ପ୍ରଭୁଙ୍କୁ ଅର୍ପଣ ପୂର୍ବକ ପରିଧାନ କରିବେ । ପ୍ରାତଃ କାଳର ବ୍ରାହ୍ମ ମୁହୂର୍ତ୍ତରେ ଅନନ୍ତ ଆକାଶ ତଳେ ଗୃହ ଛାୟାଶୂନ୍ୟ ଶୁଦ୍ଧ ନିଷ୍କଳ ସ୍ଥାନରେ ପୂର୍ବାଭିମୁଖ ହୋଇ ପରଂବ୍ରହ୍ମଙ୍କୁ ପ୍ରଣାମ କରିବେ ।



ଗାଦି ମନ୍ଦିରର
ବୃହତ୍ ଘଣ୍ଟା




# ଦର୍ଶନ ଓ ଶରଣ ବିଧି

ମହିମା ଧର୍ମରେ ପ୍ରଣାମକୁ ଶରଣ କୁହାଯାଏ । ପ୍ରଣାମ କରିବାର ନିର୍ଦ୍ଦିଷ୍ଟ କେତୋଟି ନିୟମ ରହିଛି ।

ଯଥା : ଦୁଇ ହାତ ଯୋଡ଼ି ମସ୍ତକ ଉପରେ ଲଗାଇ ପ୍ରଥମେ ଶୂନ୍ୟକୁ ଚାହିଁବ । ମହିମା ଅଲେଖ ପରଂବ୍ରହ୍ମକୁ ପ୍ରାର୍ଥନା କରି ଦୁଇ ହାତକୁ ହୃଦୟ ଉପରେ ଯୋଡ଼ି ସଂକୁଚିତ ହୋଇ ଭୂମିରେ ମଥା ଲଗାଇବ । ଦୁଇ ହାତ ଛନ୍ଦି ଦୁଇ ଭୂଜ ମୂଳରେ ହାତକୁ ରଖିବ । ତା'ପରେ ଦୁଇ ହାତକୁ ସରଳ ଭାବରେ ଆଗକୁ ବଢ଼ାଇ ହାତରେ ଭୂମିକୁ ଛୁଁଇବ । ପୁଣିଥରେ ଦୁଇ ହାତକୁ ସରଳ ଭାବରେ କୃତାଞ୍ଜଳି ପୁଟରେ ରଖିବ । ସାଷ୍ଟାଙ୍ଗ ଶରଣ ବେଳେ ଦୁଇ ପାଦ, ଦୁଇ ଆଣ୍ଠୁ, ହୃଦୟ, ନାଶା ଓ ଦୁଇ ହାତ ଭୂମିରେ ଲାଗିବ । କିଛି ସମୟ ପରେ ପୁଣିଥରେ ଦୁଇ ହାତକୁ ହୃଦୟ ପାଖକୁ ଆଣିବ । ମଥାକୁ ଟେକି ରଖି ଡାହାଣ ପାଦକୁ ବାମ ଜଙ୍ଘରେ ଛନ୍ଦି ସେହି ଗୋଡ଼ର ଆଣ୍ଠୁକୁ ହାତ ପାଖରେ ଲଗାଇ ଭୂମିରେ ମଥା ଲଗାଇବ ।

ପୁଣିଥରେ ମଥାଟେକି ଡାହାଣ ଗୋଡ଼ ଫେରାଇ ନେଇ ବାମ ଗୋଡ଼କୁ ନେଇ ଡାହାଣ ଜଙ୍ଘରେ ଛନ୍ଦି ପୂର୍ବପରି ମଥାକୁ ଭୂମିରେ ଲଗାଇବ । ତା'ପରେ ବାମ ଗୋଡ଼କୁ ଫେରାଇ ଆଣି ଡାହାଣ ଗୋଡ଼ରେ ଲଗାଇ ପୂର୍ବରୁ ମଥା ଲାଗିଥିବା ସ୍ଥାନରେ ପୁଣି ମଥା ଲଗାଇବ । ସେହି ସ୍ଥାନରୁ 'ଅଲେଖ ବ୍ରହ୍ମ' ନାମ ସ୍ମରଣ କରି ରେଣୁ ଆଣି ବାରମ୍ବାର

ତୁଣ୍ଡରେ ଲଗାଇବ । ଦେହ ଯାକ ବୋଳି ହେବ । ଶେଷରେ ପୂର୍ବପରି ଠିଆ ହୋଇ ଦୁଇ ହାତ ଯୋଡ଼ି ଉପରକୁ ଟେକି ଅଲେଖ ବ୍ରହ୍ମ ନାମ ଉଚ୍ଚାରଣ କରିବ ।

ଏହିପରି ସାତ ଥର ଶରଣ କରି ସାରି ଉଚ୍ଚ ସ୍ୱରରେ ଗୁରୁ ବ୍ରହ୍ମ "ମହିମା ଅଲେଖ" ଉଚ୍ଚାରଣ କରିବ । ତିନି ଥର ତାଳିମାରି ପଛକୁ ଘୁଞ୍ଚି ଆସିବ । ଶରଣ ଶେଷରେ ଚୌଷଠି ସିଦ୍ଧ ସନ୍ନ୍ୟାସୀ ଓ ଅନନ୍ତ କୋଟି ସାଧୁଙ୍କ ନାମରେ ଆଉ ଥରେ ଭୂମିଷ୍ଠ ପ୍ରଣାମ କରିବାକୁ ହେବ । ତାପରେ ଅନ୍ୟ ସିଦ୍ଧ ସାଧୁଙ୍କୁ ଯଥା ବିଧି ଶରଣ ମାନ୍ୟ କରିବ । ଗୁରୁ ଭାଇମାନେ ପରସ୍ପର ଏକତ୍ର ଶ୍ୱରଣ ହେବେ । ମସ୍ତକରେ ଲାଗିଥିବା ରେଣୁକୁ କଦାପି ଝାଡ଼ିବ ନାହିଁ ।

ପ୍ରଭୁଙ୍କୁ ଶରଣ ଦର୍ଶନ କରିବା ସମୟରେ କିମ୍ବା ଭିକ୍ଷା-ଭୋଜନ ଓ ପାନ ସମୟରେ ଅନ୍ୟ କାହାରିକୁ ପ୍ରଣାମ-ଶରଣ କରିବା ଉଚିତ ନୁହେଁ । ନିଜ ଆତ୍ମାର ସଦ୍‌ଗତି ସହିତ ଜଗତର ମଙ୍ଗଳ ପାଇଁ ମଧ୍ୟ ପ୍ରାର୍ଥନା କରିବା ଉଚିତ ।

ଦିନବେଳା ଯାହା କିଛି ଖାଦ୍ୟ ଗ୍ରହଣ କରିବ, ତାକୁ ପ୍ରଥମେ ପ୍ରଭୁଙ୍କୁ ଅର୍ପଣ କରି ଭୋଜନ କରିବ । ଅର୍ପଣ କରିବା ପାଇଁ ପ୍ରଥମେ ସମସ୍ତ ଖାଦ୍ୟ ଦ୍ରବ୍ୟକୁ ହାତରେ ଧରି ଉପରକୁ ଟେକି ଧରିବ । ବାମ ପାଦ ପାପୁଲିକୁ ଡାହାଣ କହୁଣିଠାରେ ଲଗାଇ ଅଲେଖ ପରଂବ୍ରହ୍ମଙ୍କୁ ସ୍ମରଣ କରିବ ।

ଅନ୍ୟର ଅଇଁଠା ନିଜେ ଖାଇବ ନାହିଁ କିମ୍ବା ଅନ୍ୟକୁ ନିଜର ଅଇଁଠା ଦେବ ନାହିଁ । ପ୍ରଭୁଙ୍କ ବ୍ୟତୀତ ଅନ୍ୟ ଦେବଦେବୀଙ୍କର ଅର୍ପିତ ପ୍ରସାଦ ଗ୍ରହଣ କରିବ ନାହିଁ ।

ତୁଳସୀ ବୃକ୍ଷର ଆରାଧନା ଓ ତା'ର ପତ୍ର ଗ୍ରହଣ କରିବା ମହିମା ଧର୍ମରେ ମନା । କୌଣସି ପର୍ବ ପର୍ବାଣିରେ ବଣ୍ଟା ଯାଉଥିବା ପ୍ରସାଦ, ଶ୍ରାଦ୍ଧ, ବିବାହ ଓ ବିଭିନ୍ନ କର୍ମରେ କିମ୍ବା ଭାର-ବେଭାର ପଦାର୍ଥ ଗ୍ରହଣ କରିବ ନାହିଁ ।

ରଜକ, ନାପିତ, ଯାଜକ, ବ୍ରାହ୍ମଣ, ଗଣକ, ଗଣିକା, ଦେବଳ, ମାଳାକାର, ଭାଟ, ଭିକ୍ଷୁକ, ମଠଧାରୀ ସନ୍ନ୍ୟାସୀ ଓ କର୍ଣ୍ଣମନ୍ତ୍ର ଦେଉଥିବା ଲୋକ, ଉପଦେଶ ଦାନକାରୀ, ବୈଦ୍ୟ ଓ ରାଜାଙ୍କ ଘରୁ କଦାପି ଅନ୍ନ ଗ୍ରହଣ କରିବ ନାହିଁ । ଏମାନେ ଦେବଦେବୀ ଦ୍ରବ୍ୟ ଭୋଗ କରୁଥିବାରୁ ଏମାନଙ୍କର ଦ୍ରବ୍ୟ ପ୍ରଭୁଯୋଗ୍ୟ ହୋଇ ରହି ନଥାଏ ।

ଗୋମାଂସ ଭକ୍ଷଣକାରୀର ଦ୍ରବ୍ୟ ସ୍ପର୍ଶ କରିବ ନାହିଁ । ଅସାଧ୍ୟ ରୋଗରେ ପୀଡ଼ିତ ଲୋକର ଗୃହରୁ ମଧ୍ୟ ଭୋଜନ ନିଷିଦ୍ଧ । ମାଛ ମାଂସ ସନ୍ନ୍ୟାସୀମାନଙ୍କୁ ଖାଇବା ମନା ।

ମଦ ଓ ମାଦକ ଦ୍ରବ୍ୟ ସେବନକୁ ମହିମା ଧର୍ମରେ କଠୋର ଭାବରେ ବାରଣ କରାଯାଇଛି । କୌଣସି ପରିସ୍ଥିତିରେ ନିଜେ ଜୀବହତ୍ୟା କରିବ ନାହିଁ । କିମ୍ବା ଜୀବହତ୍ୟା

ପାଇଁ ଅନୁମତି ପ୍ରଦାନ କରିବ ନାହିଁ। ଯେଉଁମାନେ ଭକ୍ତ ନୁହଁନ୍ତି, ସେମାନଙ୍କ ସହିତ ଭୋଜନ କିମ୍ବା ଶୟନ କରିବ ନାହିଁ ।

ଖାଦ୍ୟରେ କେଶ କିମ୍ବା ପୋକ, ମାଛି ପଡିଥିଲେ, କିମ୍ବା ବାସି , ପଚ଼ାସଡ଼ା ଖାଦ୍ୟ ଗ୍ରହଣ କରିବ ନାହିଁ। ଅତି କଟୁ, ଅତି ଅମ୍ଳ , ଅତି ଲବଣ, ଅତି ରୁକ୍ଷ ଓ ଅତି ପ୍ରଦାହକର ଖାଦ୍ୟ ଖାଇବ ନାହିଁ। ରନ୍ଧା ଖାଦ୍ୟରେ ଅଧିକ ଲୁଣ ମିଶାଇ ଖାଇବ ନାହିଁ।

ଅଶୌଚ଼ଗ୍ରସ୍ତ ବା ସୂତିକା ଘରୁ କୌଣସି ଦ୍ରବ୍ୟ ଗ୍ରହଣ କରିବ ନାହିଁ । ସୂର୍ଯ୍ୟାସ୍ତ ପରେ ପରେ ପଶ୍ଚିମ ଦିଗକୁ ମୁହଁ କରି ଅଲେଖ ପରଂବ୍ରହ୍ମଙ୍କୁ ପ୍ରଭାତ କାଳ ପରି ପାଞ୍ଚଥର ସାଷ୍ଟାଂଗ ଶରଣ ପ୍ରାପ୍ତ ହେବ। ଏହି ଶରଣ, ଭଜନ ପ୍ରଣାଳୀକୁ ଦର୍ଶନ କୁହାଯାଏ। ସଂଧ୍ୟା ଦର୍ଶନ ପରେ ଖାଦ୍ୟ ଗ୍ରହଣ କିମ୍ବା ଜଳପାନ କରିବ ନାହିଁ। ପ୍ରତି ସଂଧ୍ୟାରେ ସାଧୁ ସନ୍ନ୍ୟାସୀମାନେ ପ୍ରଭୁନାମ ସ୍ମରଣ କୀର୍ତ୍ତନ, ଭଜନ ଓ ସତଶାସ୍ତ୍ର ଅଧ୍ୟୟନ କରିବେ।

ଗିନି ଓ ଖଞ୍ଜଣିକୁ ବାଦ୍ୟ ହିସାବରେ ବ୍ୟବହାର କରାଯାଇ ପାରିବ । ଅନ୍ୟ ଉନ୍ମାଦ ସୃଷ୍ଟିକାରୀ ବାଦ୍ୟ ବଜାଇବା ଉଚ଼ିତ ନୁହେଁ। ସଂଧ୍ୟା ପରେ ପରେ ପ୍ରଭୁଙ୍କୁ ସ୍ମରଣ ପୂର୍ବକ ଶୟନ କରିବ। କୌଣସି ପ୍ରକାର ମନୋରଞ୍ଜନ କ୍ରୀଡ଼ା, ତାସ୍ ଖେଳ, ପଶାଖେଳ କିମ୍ବା ଅନ୍ୟ କୌଣସି ପ୍ରକାର ଖେଳ ସଂପୂର୍ଣ୍ଣ ଭାବେ ନିଷେଧ ।

ଯେଉଁମାନେ ସତ୍ୟଧର୍ମରେ ଦୀକ୍ଷିତ ହେବେ, ସେମାନେ କେବଳ ବ୍ରହ୍ମ ଉପାସନା କରିବେ। କାୟ ମନୋବାକ୍ୟରେ ସେମାନେ ଜୀବହିଂସା କରିବେ ନାହିଁ। ସର୍ବଦା ସତ୍ୟ ବଚ଼ନ କହିବେ। ଜୀବପ୍ରତି ଦୟା କରିବେ। ତାଂକ ପ୍ରତି ଅନ୍ୟ କେହି ଅନିଷ୍ଟ ଆଚ଼ରଣ କଲେ, ତାକୁ ସହିନେବେ। ଖଳ, ମୂର୍ଖ, ପାଷାଣ୍ଡ ଓ ପାପାତ୍ମାମାନଙ୍କ ଠାରୁ ଦୂରେଇ ରହିବାକୁ ଚ଼େଷ୍ଟା କରିବେ। ସାଧୁସଂଗ ଓ ଜନସେବା କରି ଶାନ୍ତିରେ ରହିବେ। ଆତ୍ମଜ୍ଞାନ ଅର୍ଜନ କରିବା ପାଇଁ କାମ, କ୍ରୋଧ, ଲୋଭ, ମୋହ, ମଦ ଓ ପରଶ୍ରୀକାତରତା ପ୍ରଭୃତି ଶତ୍ରୁମାନଙ୍କୁ ଦମନ କରିବେ।

ଅତିଥି ସେବା ପ୍ରତ୍ୟେକ ମଣିଷର ମୁଖ୍ୟ କର୍ତ୍ତବ୍ୟ। ସରଳ ହୃଦୟରେ ପ୍ରଭୁ ସହଜରେ ପ୍ରବେଶ କରନ୍ତି। ବାହ୍ୟ ଆଡ଼ମ୍ବର ଓ ଗର୍ବ ଅହଂକାର କାହାରିକୁ ଦେଖାଇବ ନାହିଁ। ଦୁଃଖ-ସୁଖରେ ସମଭାବ ଧାରଣ କରିବ। ଜାତି, ବିଦ୍ୟା, ଧନ ଓ ଯୌବନର ଗର୍ବ କଦାପି ମନରେ ରଖିବ ନାହିଁ।

ଏହି ନିୟମ ପ୍ରଣାଳୀକୁ ନିଷ୍କାମ ମହିମା ଧର୍ମରେ ଅତ୍ୟନ୍ତ ଗୁରୁତ୍ୱ ଦିଅ ଯାଇଥାଏ ।





# ମହିମା ଧର୍ମର ଗୃହସ୍ଥ ଧର୍ମନୀତି

ମହିମା ଧର୍ମରେ ଦୀକ୍ଷିତ ହୋଇ ଯେଉଁ ଗୃହୀମାନେ ଗୃହସ୍ଥ ଧର୍ମ ପାଳନ କରିବେ, ସେମାନଙ୍କ ପାଇଁ ମହିମା ସ୍ୱାମୀ କେତୋଟି ନୀତି ନିୟମ ସ୍ଥିର କରି ଦେଇଛନ୍ତି, ଯଥା- 'ପ୍ରଭୁ ପରଂବ୍ରହ୍ମ ସତ୍ୟ' । ତାଂକୁ ଛାଡ଼ିଲେ ସଂସାର ଅନିତ୍ୟ । ସେହି ପ୍ରଭୁ ଆମର ପିତା ମାତା, ଗୁରୁ ଓ ପ୍ରାଣଦାତା ଅଟନ୍ତି । ଏହି ଭାବନାକୁ ସର୍ବଦା ହୃଦୟରେ ରଖିବେ ।

ନିଜ ଗୃହରେ ପିତା ମାତା ଓ ପରିବାର ସଦସ୍ୟଙ୍କ ସହିତ ରହି ନିଜର ବୃତ୍ତି କରିବେ । ସର୍ବଦା ପରଂବ୍ରହ୍ମଙ୍କୁ ସ୍ମରଣ କରି ତାଂକରି ନିର୍ଦ୍ଦେଶରେ ଆମେ କର୍ମ କରୁଛୁ ବୋଲି ମନେ ରଖିବାକୁ ହେବ ।

ଗୃହସ୍ଥମାନେ ନିଜ ପତ୍ନୀ ଓ ପୁତ୍ର କନ୍ୟାଙ୍କୁ ମଧ୍ୟ ମହିମା ଧର୍ମରେ ଦୀକ୍ଷିତ କରାଇବେ । ନିୟମିତ ପ୍ରାତଃ ଓ ସାଂଧ୍ୟକାଳୀନ ଦର୍ଶନ କରିବେ । ମହିଳାମାନେ ତାଂକର ଅଶୌଚ ସାତଦିନ ପରେ ଅଙ୍ଗରେ ଗୋମୟ ଲେପନ କରି ସାତଥର ସ୍ନାନ କରିବେ । ସନ୍ନ୍ୟାସୀ ଓ ଅତିଥିମାନଙ୍କୁ ଯଥାବିଧି ଭୂମିଷ୍ଠ ଶରଣ ମାନ୍ୟ କରିବେ । ତାଂକୁ ଭୋଜନ, ପାନ ଦେବା ପୂର୍ବରୁ ନିଜେ ଅନ୍ନ ଗ୍ରହଣ କରିବେ ନାହିଁ ।

ପ୍ରତ୍ୟେକ ସେମାନେ ନିଜ ଗ୍ରାମର ଗୁରୁଆଶ୍ରମ, ଟୁଙ୍ଗୀ ଓ ଅତିଥି ଗୃହକୁ ପରିଷ୍କାର କରି ସେଠାରେ ଶରଣ-ଦର୍ଶନ କରିବେ । ସେମାନେ ଆଡ଼ମ୍ବର ପୂର୍ଣ୍ଣ ପୋଷାକ ତ୍ୟାଗ କରି ଗୈରିକ ବସ୍ତ୍ର ପିନ୍ଧିବେ । ଅସତ୍, ଖଳ ଓ ମୂର୍ଖ ଲୋକଙ୍କ ଠାରୁ ଦୂରେଇ ରହି ଶାନ୍ତିରେ ବସବାସ କରିବେ । ସ୍ୱେଚ୍ଛାଚାରୀ ବା ବେଶଧାରୀ ସନ୍ନ୍ୟାସୀଂକ ସଙ୍ଗ କରିବେ ନାହିଁ । ଦୀନ ଦରିଦ୍ରମାନଙ୍କୁ ଯଥାଶକ୍ତି ଅନ୍ନବସ୍ତ୍ର ଦାନ କରିବେ ।

ଗୃହସ୍ଥମାନେ ପ୍ରତି ଶୁକ୍ଳ ଚତୁର୍ଦ୍ଦଶୀ ପ୍ରାତଃ କାଳରେ ମହିମା ପ୍ରସାଦ ବାଲ୍ୟଲୀଳା କରିବେ । ଘୃତ ଦୀପାବଳି ଜାଳି ନାମ ଭଜନ ଗାୟନରେ ରାତ୍ରି ଯାପନ କରିବେ । ନିଜ ଘରେ ଘୃତଦୀପ ଜାଳି ମହିଳାମାନେ ଉଜାଗର ରହିବେ । ସୂତିକା ବା ଅଶୌଚ ସମୟରେ ଟୁଙ୍ଗୀକୁ ଯିବେ ନାହିଁ, କିମ୍ବା ଆସ୍ଥାନ ହତା ମଧ୍ୟକୁ ଆସିବେ ନାହିଁ । ଅଶୌଚର ଏକୋଇଶି ଦିନ ପ୍ରଭାତରେ ସ୍ନାନ ଶୌଚ ହୋଇ, ଗୋମୟ ପବିତ୍ର ପାନ କରି ବିଧି ଅନୁସାରେ ପ୍ରଭୁଙ୍କୁ ଶରଣ ଦର୍ଶନ କରିବେ ।

ଭକ୍ତମାନେ ଅଶୌଚଗ୍ରସ୍ତ ମଣିଷଙ୍କୁ ଛୁଇଁଲେ, ଗୋମୟ ଜଳଦ୍ୱାରା ସ୍ନାନ କରି ପ୍ରଭୁଙ୍କୁ ଶରଣ ହେବେ । ମହିମା ଧର୍ମାବଲମ୍ବୀମାନେ କଦାପି କୌଣସି ପଶୁ ପକ୍ଷୀଙ୍କୁ ଗୃହରେ ବନ୍ଧନ କରି ରଖିବେ ନାହିଁ । ଶରୀର ରକ୍ଷା ପାଇଁ ସୁଚିକିତ୍ସା ଓ ସୁପଥ୍ୟର ବ୍ୟବସ୍ଥା କରିବେ । କୌଣସି ଧର୍ମଗୁରୁ, ଯନ୍ତ୍ର, ମନ୍ତ୍ର ଓ ତନ୍ତ୍ରର ଆଶ୍ରୟ ନେବେ ନାହିଁ । କେବଳ ବ୍ରହ୍ମନିଷ୍ଠ ସନ୍ନ୍ୟାସୀଙ୍କ ଠାରୁ ମହିମା ଧର୍ମର ଉପଦେଶ ଗ୍ରହଣ କରିବେ । ଗୃହୀ ବ୍ୟକ୍ତିଠାରୁ ଧର୍ମୋପଦେଶ ଗ୍ରହଣ କରିବାକୁ ଆଗ୍ରହୀ ହେବେ ନାହିଁ । ପୂର୍ବରୁ ଯଦି ଭକ୍ତ ଅନ୍ୟ କୌଣସି ଧର୍ମରେ ଦୀକ୍ଷିତ ହୋଇଥା'ନ୍ତି, ତେବେ ତାଂକୁ ସେହି ଧର୍ମ ତ୍ୟାଗ କରିବାକୁ ପଡ଼ିବ । ଗୁରୁଜନ ତଥା ଅବଧୂତ ସିଦ୍ଧ ସନ୍ନ୍ୟାସୀଙ୍କ ଆଗରେ ବସିଥିବା ବେଳେ ଯେପରି ନିଜ ପାଦ ଦୁଇଟି ଦୃଷ୍ଟିକୁ ନଆସେ, ସେଥିପ୍ରତି ଭକ୍ତ ସାବଧାନ ରହିବେ । ଉପଦେଶ ଗ୍ରହଣ ସମୟରେ ଆଜ୍ଞା ଶବ୍ଦ ଉଚ୍ଚାରଣ କରି ତାକୁ ଗୁରୁ ଆଜ୍ଞା ବୋଲି ମାନି ନେବାକୁ ହେବ । ଗୁରୁଜନଙ୍କ କଥାରେ ହୁଁ ଶବ୍ଦ ବ୍ୟବହାର କରାଯାଏ ନାହିଁ । ତାଂକୁ ଦେଖିଲେ, ଆସନରୁ ଉଠି ଷାଷ୍ଟାଂଗ ପ୍ରଣାମ କରିବେ । ମଥା, ନାକ, ଦୁଇ ହାତ, ଦୁଇ ଆଣ୍ଠୁ ଭୂମିରେ ଲଗାଇ ପ୍ରଣାମ କରିବାକୁ ଷାଷ୍ଟାଂଗ ପ୍ରଣାମ ବା ଶରଣ କୁହାଯାଏ ।





# ତ୍ୟାଗୀ ସନ୍ନ୍ୟାସୀ

ପୂର୍ବ ଜନ୍ମର ସୁକୃତ ତଥା ସାଧୁ ସନ୍ଥମାନଙ୍କ ଦ୍ୱାରା ପ୍ରେରଣା ପାଇ ସଂସାର ବିଷୟ ପ୍ରତି ଯେଉଁମାନଙ୍କର ବୈରାଗ୍ୟ ଭାବ ଜାତ ହୁଏ, ଜାତି,ଧର୍ମ,ବର୍ଣ୍ଣ ଓ ବୟସ ନିର୍ବିଶେଷରେ ସେ ସନ୍ନ୍ୟାସୀ ହୋଇ ପାରିବେ । ଏଥିପାଇଁ ପିତାମାତା ଓ ବଂଧୁ ଗୁରୁଜନଙ୍କ ଠାରୁ ଅନୁମତି ନିହାତି ଦରକାର । ସଂସାର ବିଷୟ ତ୍ୟାଗ କରି ଯେଉଁ ତ୍ୟାଗୀ ପୁରୁଷ ସନ୍ନ୍ୟାସୀ ହେବାକୁ ଚାହିଁବେ, ପ୍ରଥମେ ବୈରାଗୀ ଜଣକ ତା'ର ପିତା-ମାତା, ଗୁରୁଜନ ଓ ପରିବାରର ଅନ୍ୟମାନଙ୍କୁ ବୁଝାଇ ରାଜି କରାଇବେ । ତା'ପରେ ସିଦ୍ଧ ଅତିଥି, ସାଧୁ ଗୁରୁଜନଙ୍କୁ ଆହ୍ୱାନ କରି ଧର୍ମଦାଣ୍ଡରେ ଭୋଜନ ବା ଭିକ୍ଷା ଦେବେ । ନିଜେ ପିତାମାତାଂକ ହାତରୁ କିମ୍ବା ପିତାମାତାଂକ ଅନୁପସ୍ଥିତିରେ ଆତ୍ମୀୟଙ୍କ ହାତରୁ ସମସ୍ତଙ୍କ ଉପସ୍ଥିତିରେ ଭିକ୍ଷା ଗ୍ରହଣ କରିବେ । ସେହିଦିନ ନିଜ ଭାଇ ବନ୍ଧୁ କୁଟୁମ୍ବଙ୍କୁ ଆମନ୍ତ୍ରଣ କରି ଭୋଜି ଦେବେ । ଭୋଜନ ଶେଷରେ ସମସ୍ତଙ୍କୁ ଯଥାମାନ୍ୟ ପ୍ରଣାମ କରି ସାଧୁ ସନ୍ନ୍ୟାସୀଙ୍କୁ ଅନୁସରଣ କରି ସବୁଦିନ ପାଇଁ ଗ୍ରାମରୁ ବିଦାୟ ନେବେ ।

ସେହି ମୁହୂର୍ତ୍ତରୁ ବୈରାଗୀ ମଣିଷଠାରୁ ତାଙ୍କ ବଂଧୁ ବାନ୍ଧବ କୁଟୁମ୍ବ ଲୋକେ କୌଣସି ଦ୍ରବ୍ୟ ଗ୍ରହଣ କରିବେ ନାହିଁ । ବୈରାଗୀ ଜଣକ ସନ୍ନ୍ୟାସୀ ହେବା ପରେ ନିଜ ଗ୍ରାମ କିମ୍ବା ଆଖ ପାଖ ଗ୍ରାମରେ ବୁଲିବେ ନାହିଁ । ନିଜର ପରିଚୟ ବା ଗ୍ରାମର ନାମ ଅନାବଶ୍ୟକ ସ୍ଥଳେ କହିବେ ନାହିଁ । ସେ ସଂସାରକୁ ନିଜର ଗୃହ ମନେ କରିବେ ।

ଯେଉଁଲୋକ ବିବାହ କରିଥିବେ, ତାଙ୍କର ଯଦି ବୈରାଗ୍ୟ ଭାବ ଜାତ ହୁଏ, ତେବେ ସେ ପୁତ୍ରଲାଭ ପର୍ଯ୍ୟନ୍ତ ଅପେକ୍ଷା କରିବେ । ପୁତ୍ର ରୋଜଗାର କ୍ଷମ ହୋଇ ମାତାଙ୍କର ଭରଣ ପୋଷଣ ଦାୟିତ୍ୱ ବହନ କରି ସାରିଲେ, ପିତା ସନ୍ନ୍ୟାସୀ ହୋଇ ପାରିବେ । ପୁତ୍ର ଓ ସ୍ତ୍ରୀର ବିନା ଅନୁମତିରେ କେହି ସନ୍ନ୍ୟାସୀ ହୋଇ ପାରିବେ ନାହିଁ ।

ଯଦି କୌଣସି ଲୋକ ଋଣଗ୍ରସ୍ତ ହୋଇ ବିନା ବୈରାଗ୍ୟରେ ସନ୍ନ୍ୟାସୀ ହୋଇଯାଏ , କେବଳ ପର ଅନ୍ନ ଭୋଜନ କରି ବଞ୍ଚେ, ସେ ପରଜନ୍ମରେ ପଶୁ ହୋଇ ଜନ୍ମ ଲାଭ କରି ଅନ୍ନ ଦାତାର ଋଣ ପରିଶୋଧ କରିଥାଏ । ଯିଏ ସନ୍ନ୍ୟାସୀ ହୋଇ ନିଜ ନାମରେ ସଂପତ୍ତି ଠୁଳ କରି ରଖିବ, ସେ କୌଣସି ପ୍ରକାରେ ମହାପ୍ରଭୁଙ୍କର ଦାସ ପଦକୁ ଯୋଗ୍ୟ ହେବନାହିଁ ।

ମହିମା ଧର୍ମ ସମାଜକୁ ଯିଏ ପ୍ରଥମେ ତ୍ୟାଗୀ ହୋଇ ଆସିବେ, ସେ ଗୁରୁଂକ ଆଜ୍ଞାରେ ପ୍ରଥମେ ଲଣ୍ଡା ହୋଇ ସମସ୍ତ ମାଳା, ବ୍ରତ ଓ ପଇତା ଇତ୍ୟାଦିକୁ ତ୍ୟାଗ କରିବେ । ବ୍ରାହ୍ମ ମୁହୂର୍ତ୍ତରେ ସ୍ନାନ ଶୌଚ ହୋଇ ଗୋମୟ ଓ ପବିତ୍ର ପାନ କରି ନୂତନ ଗୈରିକ ବସ୍ତ୍ର ପ୍ରଭୁଙ୍କୁ ଅର୍ପଣ କରି ଧାରଣ କରିବେ । ପ୍ରଭୁଂକୁ ଶରଣ ଦର୍ଶନ କରିବେ । ସତସଙ୍ଗରେ କିଛି କାଳ ନିଷ୍କାମ ତ୍ୟାଗୀ ପଛାରେ ରହିବେ । ଏହି ସନ୍ନ୍ୟାସୀ ପଛାରେ ଥାଇ ସେ ଯେକୌଣସି ଦିନ ସନ୍ନ୍ୟାସୀ ହୋଇ ପାରିବେ । କିନ୍ତୁ ବାଲ୍ୟାବସ୍ଥାରୁ ସନ୍ନ୍ୟାସୀ ହେଲେ, ସବୁଠୁ ସହଜ ଓ ସୁବିଧା ହୋଇଥାଏ ।





# କୌପୀନ ଧାରୀ ସନ୍ନ୍ୟାସୀ

ସନ୍ନ୍ୟାସୀ ପଛାରେ ଦୁଇ ପ୍ରକାର ସନ୍ନ୍ୟାସୀ ଅଛନ୍ତି । ବଲ୍କଳଧାରୀ ସନ୍ନ୍ୟାସୀ ଓ କୌପୀନ ଧାରୀ ସନ୍ନ୍ୟାସୀ । ଯେଉଁମାନେ ତ୍ୟାଗୀ ହେବେ, ସେମାନେ ପ୍ରଥମେ ମହିମା ଗାଦି ଗୁରୁ ଦ୍ୱାର କାର୍ଯ୍ୟକ୍ରମରେ ରହିବେ । ଗୁରୁଜନମାନଙ୍କ ନିକଟରେ ରହି ସେବା କରିବେ । ଗୁରୁଙ୍କ ଆଜ୍ଞା ପାଳନ କରି କାର୍ଯ୍ୟ କରିବେ । ଗୁରୁଜନମାନେ ତାଂକର ଭକ୍ତି ଓ ମାନସିକତାକୁ ଲକ୍ଷ୍ୟ କରି, ଡୋର କୌପୀନ ଦେଇ ତାଂକୁ ସନ୍ନ୍ୟାସୀ ହେବାକୁ ଅନୁମତି ଦେବେ, ସେହି ଦିନଠାରୁ ସେ କୌପୀନଧାରୀ ଗୋଷ୍ଠୀ ଭୁକ୍ତ ହୋଇ ବାବାମାନଙ୍କ ମଧ୍ୟରେ ଅଭେଦ ଭାବରେ ଶରଣମାନ୍ୟ ହେବେ । "ବାବା" ପଦରେ ସେମାନଙ୍କୁ ଆହ୍ୱାନ କରିବେ । ଅଢ଼େଇ ହାତରୁ ଅଧିକ ଲମ୍ବା କୌପୀନ ସେମାନେ ଧାରଣ କରି ପାରିବେ ନାହିଁ । କଟୀରେ ଡ଼ୋର କୌପୀନ ବ୍ୟତୀତ ଉପରେ କୌଣସି ବସ୍ତ୍ର ଆଚ୍ଛାଦନ କରିବେ ନାହିଁ । ବ୍ରହ୍ମନିଷ୍ଠ ହୋଇ ଗୁରୁଜନଙ୍କ ଆଦେଶ ଅନୁସାରେ ସେବା କାର୍ଯ୍ୟ ଓ ଭ୍ରମଣ କରିବେ । ଗୁରୁଦ୍ୱାର ସେବା ନୀତି କାର୍ଯ୍ୟ ଯଥାବିଧି ମାନ୍ୟ କରିବେ । ଏମାନେ ଅନନ୍ତକୋଟି ସାଧୁମାନଙ୍କ ମଧ୍ୟରେ ପରିଗଣିତ ହେବେ ଓ ବିଭିନ୍ନ ଦେଶ ଓ ବିଦେଶରେ ଭ୍ରମଣ କରି ଧର୍ମ ଧାମର ପ୍ରଚ଼ାର ପ୍ରସାର କରି ପାରନ୍ତି ।



# ଅବଧୂତ ସନ୍ନ୍ୟାସୀ

ଯେଉଁ ସାଧୁମାନେ ତୀବ୍ର ବୈରାଗ୍ୟ ସଂପନ୍ନ ହୋଇଥିବେ, ପରଂବ୍ରହ୍ମ ପରମାତ୍ମାଂକ ଭାବନା ଦ୍ୱାରା ସ୍ୱ-ଆତ୍ମାର ଐକ୍ୟ ସଂସ୍ଥାପନ କରି ଏକାନ୍ତ ଭକ୍ତିଯୁକ୍ତ ହୋଇଥିବେ; ସାମାନ୍ୟ ମାତ୍ର ସଂସାର ବିଷୟ ପ୍ରତି ଆସକ୍ତି ହେଉ ନଥିବେ, ସେମାନେ ଅବଧୂତ ପର ସନ୍ନ୍ୟାସୀ ପନ୍ଥା ଭୁକ୍ତ ହୁଅନ୍ତି । ମହିମା ଗୋସାଇଁଙ୍କ ଆଜ୍ଞା ଅନୁସାରେ ଅବଧୂତ ସିଦ୍ଧ ସନ୍ନ୍ୟାସୀମାନେ ତାଂକୁ ବଲ୍କଳ ବାନା ପ୍ରଦାନ କରି ବାବା ଶବ୍ଦରେ ଆହ୍ୱାନ କରି ଶରଣ ମାନ୍ୟ ହେବେ ।

ମହିମା ସ୍ୱାମୀଙ୍କ ଆଦେଶ ଅଛି, କୌଣସି ସନ୍ନ୍ୟାସୀ ମହନ୍ତ, ଅଧିକାରୀ ବା ଗୁରୁ ପଣିଆ ପ୍ରଦର୍ଶନ କରି ପାରିବେ ନାହିଁ । କେହି କାହିରିକୁ ନ୍ୟୂନାଧିକ ବିଚ଼ାର କରିବେ ନାହିଁ । ସମ୍ବୋଧନରେ ସମ୍ମାନ ସୂଚ଼କ 'ଆଜ୍ଞା' ଶବ୍ଦ ବ୍ୟବହାର କରିବେ ।

ଅବଧୂତ ପର ସନ୍ନ୍ୟାସୀମାନେ ଜଗତର ପ୍ରାଣୀ ଛପନ କୋଟି ଜୀବଜନ୍ତୁ ପ୍ରଭୁ ପରମାତ୍ମାଙ୍କର ବୋଲି ମନେ କରି ଶତ୍ରୁ ମିତ୍ର ଭାବ ରଖିବେ ନାହିଁ ।



# ମହିମା ଗାଦି ସ୍ଥାପନ

ମହିମାସ୍ୱାମୀ ଅନୁଗୋଳ ଭ୍ରମଣ ଶେଷ କରି ଭୋଗବାରିଣି, କୁଷଡ଼ପି ଟୁଙ୍ଗୀଠାରେ କୃପାସିନ୍ଧୁ ବାବା ଓ ବୈରାଗୀ ବାବାଂକ ଉପସ୍ଥିତିରେ ଭକ୍ତମାନଙ୍କୁ ଭବିଷ୍ୟତ ବାଣୀ ଶୁଣାଇଥିଲେ ଯେ, ମହିମାପ୍ରଭୁଙ୍କ ଲୀଳା ଶେଷରେ ପ୍ରଭୁଙ୍କର ନାମ ଓ ଧାମ ରହିଯିବ । ଏହି ଧାମ ଏଠାରୁ ଏକ କୋଶ ଦୂରରେ ପ୍ରତିଷ୍ଠା ହେବ'। ତା'ପରେ ମହିମା ଗୋସାଇଁ ଢେଙ୍କାନାଳକୁ ଯାତ୍ରା ଆରମ୍ଭ କରିଥିଲେ । ଯୋରନ୍ଦା ଗାଆଁରେ ପହଞ୍ଚି ମହିମା ଗୋସାଇଁ ସାଧୁ ଓ ଭକ୍ତମାନଙ୍କୁ ସୂଚନା ଦେଲେ ଯେ- ଭବିଷ୍ୟତରେ ଏହିଠାରେ ପ୍ରଭୁଙ୍କ ବୃହତ ମନ୍ଦିର ପ୍ରସ୍ତୁତ ହେବ । ସେଥିପାଇଁ ପଥର ଯୋଗାଡ଼ କର । ପୂର୍ବରୁ ତିଆରି ହେଉଥିବା ବିଭିନ୍ନ ସ୍ଥାନର ଟୁଙ୍ଗୀ ପରି ଏଠାରେ ଟୁଙ୍ଗୀ ତିଆରି ହେବନାହିଁ । ତାଂକର ଆଦେଶରେ ସାଧୁ ଓ ଭକ୍ତମାନେ ଦୁଇ ହଜାର ଖଣ୍ଡ ପଥର ସଂଗ୍ରହ କରି ରଖିଥିଲେ ।

ବିଭିନ୍ନ ସ୍ଥାନ ଭ୍ରମଣ ପରେ ମହିମା ଗୋସାଇଁ ୧୨୮୩ ଅବ୍ଦ ଅର୍ଥାତ୍ ୧୮୭୬ ମସିହା ଫାଲଗୁନ ମାସ ଶୁକ୍ଳପକ୍ଷ ସୋମବାର ଦିନ ଯୋରନ୍ଦା ସ୍ଥିତ ପାଞ୍ଚ ହାତିଆ ଟୁଙ୍ଗୀ ରେ ପହଞ୍ଚିଲେ । ସେଠାରେ ସେ ନୂତନ ଆଡ଼ବନ୍ଧ ବଲ୍କଳବାନା ଗ୍ରହଣ କରି ସୂଚନା ଦେଲେ, 'ମୁଁ ଚାରିଦିନ ପାଇଁ ଶୁଭସମାଧି ଅବଲମ୍ବନ କରିବି'। ସେଦିନ ଅପରାହ୍ନ ପାଞ୍ଚଟା ବେଳେ ମହିମା ଗୋସାଇଁ ପଦ୍ମାସନରେ ବସି ଚିର ଅଟଳ ସମାଧି ଗ୍ରହଣ କଲେ । ଏହାପରେ ଆଉ ତାଙ୍କର ସମାଧି ଭଂଗ ହେବନାହିଁ ବୋଲି ଜଣାପଡ଼ିଲା ।

ନୀଳାଦ୍ରି ବାବାଙ୍କ ନେତୃତ୍ୱରେ ମହିମା ସ୍ୱାମୀ ବୁଧବାର ଦିନ ପ୍ରଭାତରେ ସାଧୁ ଓ ଭକ୍ତମାନେ ମହିମା ଗାଦିର ଶୁଭ କରାଇଥିଲେ । ପରେ ୨୬ ଜଣ ସନ୍ନ୍ୟାସୀ ଜକାଗ୍ରାମ ଟୁଙ୍ଗୀରେ ବସି ସ୍ଥିର କଲେ, ବୃହତ ମହିମା ଗାଦି ଉପରେ ଅନନ୍ତ ସପ୍ତଫଣୀ ଦୃଶ୍ୟ ରଖାଯିବ । ମନ୍ଦିର ବେଢ଼ାରେ ସାଧୁମାନେ ତ୍ରିସଂଧ୍ୟାରେ ନାମ ଭଜନ ଗାନ ସହିତ ନୀତି କରିବେ । ପୂର୍ବରୁ ସଂଗ୍ରହ କରାଯାଇଥିବା ଦୁଇ ହଜାର ଖଣ୍ଡ ପଥରକୁ ନେଇ ବାରହାତ ଉଚ୍ଚର ଗାଦି ମନ୍ଦିର ତିଆରି ଆରମ୍ଭ କରାଗଲା । ଏଥିରେ ଅନେକ ଭକ୍ତ ନିଜର ଅର୍ଥ ଓ ଶ୍ରମ ଦାନ କରିଥିଲେ । ସେହିବର୍ଷ କାର୍ତ୍ତିକ ପୂର୍ଣ୍ଣିମାରେ ପ୍ରଥମ କରି ସିଦ୍ଧାନନ୍ଦ ବାବା ଗାଦି ମନ୍ଦିରରେ ଘୃତ ଦୀପାବଳି ପ୍ରଦାନ କରିଥିଲେ ।

ମହିମା ଗୋସାଇଁ ଶୁଭ ସମାଧି ଅବଲମ୍ବନ କରିଥିବା ଟୁଙ୍ଗୀ ସ୍ଥାନରେ ଅନ୍ୟ ଏକ ଏକୋଇଶି ହାତ ଉଚ୍ଚର ମନ୍ଦିର ନିର୍ମାଣ କରାଗଲା । ତାକୁ "ଶୂନ୍ୟ ମନ୍ଦିର" ନାମରେ ନାମିତ କରାଗଲା । ସେଠାରେ ସେହିଦିନଠାରୁ ଚିରଦିନ ପାଇଁ ଅଖଣ୍ଡ ଧ୍ୱନି-ମନ୍ଦିର ଭିତରେ ଅଖଣ୍ଡ ଘୃତବତି ଲାଗି ନିତ୍ୟ ନୀତିକାର୍ଯ୍ୟ କରାଯିବ ।

ଏହି ମହିମା ଗାଦି ପାଇଁ କୌଣସି ଜମିବାଡ଼ି ଖଞ୍ଜା ରହିବ ନାହିଁ । ପ୍ରଭୁଙ୍କ ମହିମାରେ ଦେଶ ବିଦେଶରୁ ଭକ୍ତମାନେ ଓ ଅନ୍ୟ ଗୃହୀମାନେ ଯାହା ଅର୍ଥଦାନ କରିବେ, ତାହା ଗାଦି ମନ୍ଦିରର ଉନ୍ନତି କଳ୍ପେ ବ୍ୟବହୃତ ହେବ ବୋଲି ମହିମାପ୍ରଭୁ ପୂର୍ବରୁ ଆଦେଶ କରିଥିଲେ ।

ଆଜିଯାଏ ସେହି ଅର୍ଥରେ ଏହି ମନ୍ଦିରରେ ପ୍ରତିଦିନ ମହିମା ପ୍ରସାଦ, ବାଲ୍ୟଲୀଳା ଓ ଘୃତାହୁତି ହୁଏ । ଘୃତ ଦୀପାବଳି ମଧ୍ୟ ଜଳାଯାଏ । ଅତିଥି ଓ ଭକ୍ତମାନଙ୍କୁ ଯଥାବିଧି ଭୋଜନ ମଧ୍ୟ ଦିଆଯାଏ । ଭକ୍ତ କିମ୍ବା ସନ୍ନ୍ୟାସୀ ଏହି ଅର୍ଥକୁ ଅପବ୍ୟୟ କଲେ, ତାଙ୍କୁ ସମାଜରୁ ବହିଷ୍କାର କରାଯିବାର ବ୍ୟବସ୍ଥା ରହିଛି । ମହିମା ଗାଦି ଅର୍ଥକୁ କାହାରିକୁ ଋଣ ଦିଆଯାଏ ନାହିଁ । ମହିମା ଧର୍ମସଭାର ନିଷ୍ପତ୍ତି ଅନୁସାରେ ମହିମା ଗାଦିର ନୀତି ନିୟମ ନିର୍ଦ୍ଧାରଣ କରାଯାଇଛି । ତାକୁ ଆଜିଯାଏ ସାଧୁ,ଭକ୍ତ ଓ ଗୃହୀମାନେ ପାଳନ କରି ଆସୁଛନ୍ତି । ବାବାମାନେ ମହିମା ଗାଦିର ତତ୍ତ୍ୱାବଧାରକ ଭାବେ କାର୍ଯ୍ୟ କରି ଆସୁଛନ୍ତି । କୌପୀନଧାରୀ ସନ୍ନ୍ୟାସୀମାନେ ଏହି ସେବା ନୀତି କରି ଆସୁଛନ୍ତି । କିନ୍ତୁ ଗୃହସ୍ଥ ଭକ୍ତମାନେ ଏହି କାର୍ଯ୍ୟରେ ନିୟୋଜିତ ହୋଇ ପାରନ୍ତି ନାହିଁ ।

ଏହି ନିୟମ ଅନୁସାରେ କୌଣସି ସନ୍ନ୍ୟାସୀ ସ୍ଥାୟୀ ଭାବେ ଗୁରୁ ଗାଦିର ସେବକ ବା ପରିଚାଳକ ହୋଇ ରହିପାରନ୍ତି ନାହିଁ । ମାସଟିଏ ଦାୟିତ୍ୱରେ ରହି ପୁଣି ଜଗତ ଭ୍ରମଣ କରି ସତ୍ୟଧର୍ମ ପ୍ରଚାର କାର୍ଯ୍ୟରେ ବାହାରି ଯାଆନ୍ତି ।

ଗୁରୁ ଗାଦି ମଧ୍ୟରେ କୌଣସି ନାରୀ ସନ୍ନ୍ୟାସୀନୀ ହୋଇ ରହନ୍ତି ନାହିଁ ।

କୌଣସି ଭକ୍ତ ବା ଗୃହସ୍ଥ ଲୋକ ନିଜର ପରିବାର ଧରି ମହିମା ଗାଦି ପରିସର ମଧ୍ୟରେ ଗୋଟିଏ ରାତ୍ର ବ୍ୟତୀତ ଦୀର୍ଘଦିନ ଧରି ବସବାସ କରି ପାରନ୍ତି ନାହିଁ ।

ଯୋରନ୍ଦା ସ୍ଥିତ ମହିମା ଗାଦିକୁ ଏକମାତ୍ର "ଶ୍ରେଷ୍ଠ ଗୁରୁ ପୀଠ" ଭାବରେ ସମସ୍ତ ସନ୍ନ୍ୟାସୀ, ଭକ୍ତ ଓ ଗୃହସ୍ଥମାନେ ସ୍ୱୀକାର କରି ଆସୁଛନ୍ତି । ଏମାନେ କେବଳ ମହିମା ଧର୍ମର ଧର୍ମସଭା ଓ ଆଲୋଚନା ବ୍ୟତୀତ ଅନ୍ୟ କୌଣସି ସଭା-ସମିତି ବା ଉତ୍ସବରେ ଯୋଗଦାନ କରନ୍ତି ନାହିଁ । କୌଣସି ଗୃହୀ ଲୋକଙ୍କ ସହିତ ସନ୍ନ୍ୟାସୀମାନଙ୍କ ବସବାସକୁ ମହିମା ଧର୍ମରେ କଠୋର ଭାବେ ବାରଣ କରା ଯାଇଛି ।

ମହିମା ଗାଦି ପରିସରରେ କୌଣସି ପ୍ରକାର ଧ୍ୱଜା ବା ପତାକା ଉତ୍ତୋଳନ ତଥା ତୋରଣ ବା ପୁଷ୍ପମାଲ୍ୟ ସାଜସଜ୍ଜାକୁ ସ୍ଥାନ ଦିଆଯାଏ ନାହିଁ । ମହିମା ଗାଦି ପରିସର ମଧ୍ୟରେ ଜୀବହତ୍ୟା, ହିଂସା କାର୍ଯ୍ୟ ଅନ୍ୟ କୌଣସି ପ୍ରକାର ଅସାମାଜିକ କାର୍ଯ୍ୟ କରିବାକୁ ସୁଯୋଗ ଦିଆଯାଏ ନାହିଁ । ମହିମା ଧର୍ମ ଅନୁଷ୍ଠାନ ଓ ଭକ୍ତିଗୀତ ଗାୟନ ଭଜନ ବ୍ୟତୀତ ଅନ୍ୟ କୌଣସି ରାଜସିକ, ତାମସିକ, ଗାୟନ ଓ ନଟ ନାଟ୍ୟାଦି ତାମସାକୁ ପରିବେଷଣ କରିବାକୁ ଗାଦି ପରିସର ମଧ୍ୟରେ ଅନୁମତି ଦିଆଯାଏ ନାହିଁ ।

ଅସ୍ଥାୟୀ ଧୂନି ମନ୍ଦିର ସ୍ଥାନରେ ୧୯୫୮ ମସିହା ମାଘ ପୂର୍ଣ୍ଣିମା ଦିନ ସ୍ଥାୟୀ ଧୂନି ମନ୍ଦିର ପ୍ରତିଷ୍ଠା କରା ଯାଇଥିଲା । ସେଠାରେ ନିୟମିତ ତ୍ରିସଂଧ୍ୟାରେ ଘୃତାହୁତି ହୋଇ ଚାଲିଛି ।

ତାପରେ ନୀଳାଦ୍ରି ବାବାଂକ ନେତୃତ୍ୱରେ ଅନ୍ୟ ବାବାମାନେ ବର୍ତ୍ତମାନର ଛତିଶ ହାତ ଉଚ୍ଚର ଗାଦି ମନ୍ଦିର ନିର୍ମାଣ କରିଛନ୍ତି ।

**ମହିମା ଗାଦି ମୁଖ୍ୟ ପୀଠର ପ୍ରବେଶଦ୍ୱାର**





# ମହିମା ଧର୍ମର ମହା କବି ସନ୍ଥ ଭୀମଭୋଇ

ଭୀମ ଭୋଇ ହେଉଛନ୍ତି, ମହିମା ଧର୍ମର ମହାକବି । ଆପଣାର ସାହିତ୍ୟକୃତି ମାଧ୍ୟମରେ ହିଁ ସେ ମହିମା ଧର୍ମର ଔଜ୍ଜ୍ୱଲ୍ୟ ଓ ଗୌରବ ବଢ଼ାଇଛନ୍ତି । ମହିମା ଧର୍ମର ବିମୋଚନକାରୀ ବାଣୀଗୁଡ଼ିକୁ ସାହିତ୍ୟ ରୂପ ଦେଇ ଓଡ଼ିଆ ସାହିତ୍ୟର ଔଜ୍ଜ୍ୱଲ୍ୟ ଏବଂ ଗୌରବ ମଧ୍ୟ ବୃଦ୍ଧି କରିଛନ୍ତି ।

ଭୀମ ଭୋଇ ଜାତିରେ କନ୍ଧ ଥିଲେ । ଏକ ଆଦିବାସୀ ଦରିଦ୍ର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଭୀମ ଭୋଇ ଠିକ୍ କେଉଁ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ, ସେହି ବିଷୟରେ ଏବେ ମଧ୍ୟ ଦ୍ୱିମତ ରହିଛି । ଦାରିଦ୍ର୍ୟ ଓ ଅନ୍ନ ସଂସ୍ଥାନର ଆବଶ୍ୟକତା ଦ୍ୱାରା ତାଡ଼ିତ ହୋଇ ଭୀମ ଭୋଇ ବାଲ୍ୟକାଳରେ ଗ୍ରାମରୁ ଗ୍ରାମାନ୍ତର ହୋଇଥିଲେ , ତେଣୁ ତାଙ୍କର ଜନ୍ମସ୍ଥାନ ଗୁଡ଼ିକ ବିଷୟରେ ଏକାଧିକ ମତ ରହିଛି

ସଂବେଦନଶୀଳତା ହିଁ ଭକ୍ତର ସର୍ବ ପ୍ରଧାନ୍ ସ୍ୱଭାବ । ସେହି ସ୍ୱଭାବ ବଳରେ ସାଧାରଣ ମଣିଷ ସନ୍ଥ ବା କବି ହୁଏ । ତା'ଠ ଭକ୍ତି ଲବ୍ଧ ଯାବତୀୟ ସାନ୍ନିଧ୍ୟାନୁଭବକୁ ଜୀବନର ଅତ୍ୟନ୍ତ ନିକଟବର୍ତ୍ତୀ କରି ଟାଣି ଆଣେ । ଏହି ସଂବେଦନଶୀଳତା ହିଁ ଭୀମ ଭୋଇଙ୍କ ଭାଷାକୁ ଅନୁରୂପ ଭାବରେ ବିବର୍ତ୍ତିତ କରି ଆଣିଥିଲା । ସେହି ସଂବେଦନଶୀଳତାକୁ ଖୋଜିବାକୁ ଯାଇ ଭୀମ ଭୋଇ ଆପଣାର ଭାଷାଟିକୁ ଲାଭ କରିଥିଲେ ।

କବି ଭୀମ ଭୋଇଙ୍କର କବିତ୍ୱ ପ୍ରେରଣା ସିଧା ସେଇଠୁ ଆସିଥିଲା, ଯେଉଁଠାରେ ସିଏ ଆପଣାର ସବୁକିଛିକୁ ସମର୍ପଣ କରି ଦେଇଥିଲେ । ଅସଲ ପୁରୁଷଙ୍କୁ ଯିଏ ଆପଣାର ଆଖି ଆଗରେ ଅର୍ଥାତ ସିଧା ଆପଣାର ହୃଦୟ ଭିତରେ ଅନୁଭବ କରେ, ତାଙ୍କ ସହିତ ଖିଅ ଲଗାଇ ବାଟ ଚାଲିପାରେ । ଆପଣାର ଅସଲ ଦୃଷ୍ଟି ଓ ଅସଲ ସ୍ପର୍ଶଗୁଡ଼ିକର କ୍ଷେତ୍ରରେ ସିଏ ଯଥାର୍ଥରେ ଏକ କବି ଦୃଷ୍ଟି ଲାଭ କରିଥାଏ । ଭୀମ ଭୋଇଙ୍କର ଦୁଇଶହ ବର୍ଷ ପୂର୍ବରୁ ଓଡ଼ିଶାରେ ଯେଉଁ ରୀତିଯୁଗ ଚାଲି ଆସୁଥିଲା, ସେହି ଯୁଗର କବିମାନେ କବିତ୍ୱରେ ବ୍ୟୁତ୍ପତ୍ତି ହାସଲ କରିବା ପାଇଁ ଅମର କୋଷ ଘୋଷୁଥିଲେ । ଅନେକ ଶ୍ରମ କରୁଥିଲେ । ନିଜକୁ ବୁଝାଇ ପାରିବା ପାଇଁ ସ୍ୱତନ୍ତ୍ର ଅଭିଧାନମାନ ରଚନା କରୁଥିଲେ । ଭୀମ ଭୋଇଙ୍କର ରଚନା ଶୈଳୀ ହେଲା, "ସନ୍ଥ ଶୈଳୀ" । ପୃଥିବୀର ପ୍ରାୟ ସବୁ ସନ୍ଥଙ୍କ ପରି କବି ଭୀମ ଭୋଇ ମଧ୍ୟ ତାହାର ଗୋଟିଏ ଉଦାହରଣ । ଭୀମ ଭୋଇ ଯାହାକିଛି ଲେଖିଛନ୍ତି, ତାହା ପାଣ୍ଡିତ୍ୟରୁ ନୁହେଁ, ବରଂ ସାରଲ୍ୟତା କାରଣରୁ ତାହା ସମସ୍ତଙ୍କୁ ଏତେ ନିବିଡ଼ ଭାବରେ ସ୍ପର୍ଶ କରି ପାରୁଛି । ଭୀମ ଭୋଇ ଲେଖିବା ବେଳେ ଶବ୍ଦଗୁଡ଼ିକୁ ବାଛି ନାହାନ୍ତି, ତାଙ୍କର ଅନୁରାଗ ଅନୁସାରେ ତାଙ୍କର ଶବ୍ଦଗୁଡ଼ିକ ସତେ ଅବା ବଳେ ବଳେ ତାଙ୍କ ପାଖରେ ଆସି ପହଞ୍ଚି ଯାଇଛନ୍ତି, ଯଥା -"ଶ୍ରୀଗୁରୁ କୃପାରେ ମୋର ଗୋ କବିପଣ",

ବାଳକ ବୟସ ବୁଦ୍ଧି ମୋ ନାହିଁ ଜ୍ଞାନ । *-ଆଦି ଅନ୍ତ ଗୀତା-*

ଆପଣାର ଗୋଟିଏ ଭଜନରେ ସେ ମୁକୁଳା ହୋଇ 'ଅକ୍ଷର ନବସେ ତାଙ୍କ କରୁଣା ନୋହିଲେ ହେ' ବୋଲି ଲେଖିଛନ୍ତି । ତାଙ୍କର ଗୋଟିଏ ଚଉତିଶାରେ ଅତି ପରିଚିତ ପଦଟି ରହିଛି :

"ତର ତର କରି ମୁଁ ଯେ ତିଆରୁଛି ପଦ,

ତାକି ନାହିଁ ଆଗପଛ ବେଦ କି ନିର୍ବେଦ ।

ତିନି ତ୍ରୈଲୋକ୍ୟ ଦେବତା,

ତାଳପତ୍ରେ ଲେଖୁଅଛି ବୁଝିବ ବାରତା" ॥

ପୁଣି, ଆଉ ଗୋଟିଏ ଭଜନରେ:-

"ସର୍ବେ ଥାଅ ହୋ ଶୁଣି ।

କବି ପସରା ମୋତେ ଶିରେ ବୁହାଇଦେଲେ,

ଅତିଥି ରୂପେ ସ୍ୱାମୀ ବ୍ରହ୍ମାଣ୍ଡରେ ବୁଲିଲେ-

ଭଣେ ଭୀମ ଅକ୍ଷିତ ନୁହେଁ ମୁରୁଛି ହେ" ॥

ଏହିପରି ପ୍ରଭୁ ଯାବତୀୟ ଭାବନାକୁ ସତେ ଅବା ଏକ ମୁକୁଟ ପିନ୍ଧାଇ ଦେଲେ ।କଣ୍ଠରେ ପଡ଼ିଥିବା କବିତ୍ୱର ମାଳାଟିର ଅସଲ ପରିଚୟଟିକୁ ଦେଇ ଭୀମ ଭୋଇ ତାଙ୍କର ସବୁଠାରୁ ଅଧିକ ଆଦୃତ ଓ ପରିଚିତ ପୁସ୍ତକ ସ୍ତୁତି ଚିନ୍ତାମଣିରେ ଲେଖିଛନ୍ତି:-

"ଜଗତରେ କବିପଣେ ବୋଲାଉଛି

ଦୋଷ ଦେବନାହିଁ ମୋତେ,

ନିନ୍ଦା ହାନି ଲାଭ ପାପ ପରମାଦ

ପୂରି ରହିଛି ଜଗତେ" । *-୩୪ ଶ ବୋଲି ।*

ସନ୍ଥମାନେ ମାୟାକୁ ଅସ୍ୱୀକାର କରୁ ନଥିଲେ । ମାୟାକୁ ମିଥ୍ୟା ବୋଲି କହି ଆଉ ଅନ୍ୟ କେଉଁଠାରେ ବ୍ରହ୍ମଙ୍କର ସାକ୍ଷାତ ଲାଭ କରିବାକୁ ଆତୁର ହୋଇ ପଳାଇ ଯାଉ ନଥିଲେ । ସେମାନେ ମାୟାକୁ ସେହି ଭଗବାନଙ୍କର ରଚନା ବୋଲି ଦେଖୁଥିଲେ। ସେହି ଭବସିନ୍ଧୁ ଭିତରେ ଭାବସିନ୍ଧୁର ସନ୍ଧାନ କରୁଥିଲେ । ବାହାର ନେତ୍ରରେ ଏବଂ ଖଣ୍ଡିତ ବିବେକରେ ଯାହା ଗୋଟା ସୁଦ୍ଧା ଭବସିନ୍ଧୁ ପରି ଦେଖାଯାଏ । ଅନ୍ତର୍ଗତ ହୋଇ ଚାହିଁ ପାରିଲେ , ତାହା ହିଁ ଭାବସିନ୍ଧୁ ହୋଇ ଦୃଷ୍ଟି ଗୋଚର ହୁଏ ।

ସନ୍ଥମାନେ ଅନ୍ତର୍ଗତ ଚକ୍ଷୁରେ ହିଁ ପଣ୍ଡିତମାନଙ୍କୁ ଯାବତୀୟ ପ୍ରମାଦରେ ପକାଉଥିବା ମାୟାକୁ ଦେଖିଛନ୍ତି । ତେଣୁ ସେମାନେ ଭାବସିନ୍ଧୁକୁ ଦେଖିଛନ୍ତି ।

ଭୀମ ଭୋଇ ଯାହାଙ୍କୁ ସବା ଉପରେ ବସାଇ ଆପଣାର କବିପଣ କରିଛନ୍ତି, ସିଏ ହେଉଛନ୍ତି- 'ଅଲେଖ' । ଗୋଟିଏ ଭଜନରେ ତାଙ୍କରି ଦ୍ୱାରା ପ୍ରଦତ୍ତ ସଂଜ୍ଞାଟି ଦ୍ୱାରା କହିଲେ, "ଚାରିଯୁଗ କବି ଲେଖି ନପାରିଲେ, ଅଲେଖ ବୋଲିଣ ନାମ ତହୁ ଦେଲେ" । ଅଲେଖ ଅର୍ଥାତ୍ ଅକଳ୍ପନା, ଅକଳଣା । ତାଙ୍କର ଆଉ ଏକ ପରିଚିତ ଭଜନରେ ରହିଛି-

ଚାଲନ୍ତି ଶୂନ୍ୟେ ଶବଦ ଅନୁମାନ ଚିତ୍ତେ ଭେଦ
ଅକଳନା ବାରାନିଧି ନାମ ମହିମା ଅଗାଧ ।
ଗମ୍ୟ ନାହିଁ ଚାରି ଧର୍ମ ଜ୍ୟୋତି ଜ୍ୱାଳା ଉର୍ମ ଧୂର୍ମ
ବ୍ରହ୍ମା ବିଷ୍ଣୁ ଶିବ ବଣା ଏମନ୍ତ ସେ ଯେଉଁ ପାଦ ।
ଯେ ରାମଚନ୍ଦ୍ର ଅନନ୍ତ କୃଷ୍ଣଚନ୍ଦ୍ର ଜଗନ୍ନାଥ
ଚାରିଯୁଗ ଅବତାରେ ହୋଇ ନ ପାରିଲେ ସିଦ୍ଧ ।...
ଛପ୍ପନ କୋଟି ଜନ୍ତୁ ଜୀବ କରି ନପାରିଲେ ଠାବ
ମୁନି ତପସ୍ୟାରେ ବସି ମନରେ ହେଲେ ତବଦ ।
ଅବ୍ୟକତ ବ୍ରହ୍ମ ଯେହି, ରୂପ ରଚନାରେ ନାହିଁ
କହେ ଭୀମ ଅରକ୍ଷିତ ଅନାମେ ରହିଲା ଭେଦ ॥

ଅସଲ ଭେଦ ନିଗମରେ ରହିଛି । ଯେଉଁଠାକୁ ବାହାରର ଏହି ଯାବତୀୟ ବିଧି ଓ ମୂର୍ତ୍ତିର ଭେଦ ପ୍ରକରଣ ଦ୍ୱାରା ଆଦୌ ଗମି ହେବନାହିଁ, ଅସଲ ବସ୍ତୁଟି ତାହାରି ଭିତରେ ରହିଛି । ତାଙ୍କର ଆଜ୍ଞାରେ ସବୁକିଛିର ଭିଆଣ ହୋଇଛି:-

"ଆଜ୍ଞାରେ ଚଳେ ଚନ୍ଦ୍ର, ସୂର୍ଯ୍ୟ, ଯେ ପୃଥ୍ୱୀ ଆପ ବାୟୁ ତେଜ" ।

*- ନିର୍ବେଦ ସାଧନ-*

'ସ୍ତୁତି ଚିନ୍ତାମଣି'ର (୭୭ମ ବୋଲି) ପଦ ଅନୁସାରେ ବିନା ଆଜ୍ଞାରେ ତିରଣଟାଏ ମଧ୍ୟ ହଲେ ନାହିଁ। ତାଙ୍କରି ଆଜ୍ଞାରେ ସପ୍ତସିନ୍ଧୁ ପୂରି ରହିଛି, ଏହା କଦାପି କୂଳ ଲଂଘନ କରୁନାହିଁ । ଏହି ନବଖଣ୍ଡ ମହୀ ସେହି ଆଜ୍ଞାର ବଳରେ ହିଁ ତିଷ୍ଠି ରହିଛି । ରସାତଳକୁ କଦାପି ଖସି ପଡୁନାହିଁ। ସେହି ଆଜ୍ଞାକୁ ଘେନି ଚନ୍ଦ୍ର ସୂର୍ଯ୍ୟ ଆକାଶରେ ଉଦୟାସ୍ତ ହେଉଛନ୍ତି । ନବଲକ୍ଷ ତାରା କକ୍ଷରେ ବୁଲୁଛନ୍ତି। ତାଙ୍କରି ଆଜ୍ଞାରେ ହିଁ ଇନ୍ଦ୍ର ଜଳ ବୃଷ୍ଟି କରୁଛି ।

ଅକଳଣା ଏବଂ ଅପହଞ୍ଚ ଯେଉଁଠାରେ ବିରାଜିତ ରହିଛନ୍ତି, ଭୀମ ଭୋଇ କବିର କଳ୍ପନା ଦେଇ ତାହାକୁ କେଡେ ସୁନ୍ଦର ଶବ୍ଦରେ ମହାନିତ୍ୟ ମଣ୍ଡଳ ବା "ମହାନିତ୍ୟ-ଭୁବନ" ବୋଲି କହିଛନ୍ତି। ମହାନିତ୍ୟ ମଣ୍ଡଳରେ ଚାରି ଦ୍ୱାରରେ ଦେବତାମାନେ ନିଯୋଗ ଖଟୁଛନ୍ତି। କେତେ ପ୍ରକାରର ବାଦ୍ୟ ବାଜୁଛି । କେତେ ପ୍ରକାରର ସ୍ତବଗାନ ହେଉଛି । କବିଙ୍କ ନିଜ ଭାଷାରେ -

ଅନ୍ତର୍ଯ୍ୟାମୀ ସମ୍ଭାଳ ଶରଣ ହେ ଶୂନ୍ୟବ୍ରହ୍ମ,
ଦିଅ ଦରଶନ ॥

ପଶ୍ଚିମଦ୍ୱାରେ ଅନନ୍ତ ଖଞ୍ଜଣୀ ମନ୍ଦିରାଘାତ
ମନକାମନା ବାଞ୍ଛିତ ଦରଶନରେ ଆଗତ
କରୁଛନ୍ତି ନାମକୁ ଗାୟନ ହେ ॥୧॥

ପରମ ଉତ୍ତର ଦ୍ୱାରେ ଚିତ୍ତ ନିବେଶି ଶୂନ୍ୟରେ
ଧ୍ୟାୟି ଶ୍ରୀଗୁରୁ ପୟରେ, କରପତ୍ର ଯୋଡ଼ି ଶିରେ
ଲାଗିଅଛି ଶ୍ରୀମୁଖେ ଭଜନ ହେ ॥୨॥

ପୂର୍ବଦ୍ୱାରେ ରାମ ହରି ବଜାଇ ବୀଣା ବାଂଶରୀ
ଦରଶନେ ଇଚ୍ଛା କରି ନାଚୁଛନ୍ତି ଭୋଳେ ପଡ଼ି
ଜୟଶଙ୍ଖ ବାଜେ ଘନ ଘନ ହେ ॥୩॥

ଦକ୍ଷିଣରେ ଜଗନ୍ନାଥ ଦ୍ୱାରେ ଆସି ପ୍ରବେଶିତ

ବେଢ ପଡ଼ି ଅପ୍ରମିତ ରହିଛନ୍ତି ଯୂଥ ଯୂଥ

ଦରଶନେ ସବୁଙ୍କରୀ ମନ ହେ ॥୪॥

ଏହି ଯୂଥ ଭିତରେ ଅନନ୍ତ, ପରମ, ରାମ ଓ ହରି ଇତ୍ୟାଦିଙ୍କ ସହିତ ଜଗନ୍ନାଥ ବି ରହିଛନ୍ତି । ଭୀମ ଭୋଇ ଗୋଟିଏ ବାକ୍ୟରେ ଓଡ଼ିଶାର ଇଷ୍ଟ ଦେବତା ଜଗନ୍ନାଥଙ୍କୁ ମଧ୍ୟ କେବଳ ଜଣେ ଦର୍ଶନାର୍ଥୀ ଅବତାର ରୂପେ ସଜାଇ ଦେଇଛନ୍ତି । ଅସଲ କର୍ତ୍ତା ହେଉଛନ୍ତି ମହିମା । ବ୍ରହ୍ମ ନିରୂପଣ ଗୀତାର ବର୍ଣ୍ଣନା ଅନୁସାରେ ମହିମାଙ୍କର ଅଙ୍ଗରେ ହର କୌପୁନୀ ହୋଇଛନ୍ତି, ବିଷ୍ଣୁ ତାଙ୍କ ଅଙ୍ଗର ବିଭୁତି ହୋଇଛନ୍ତି । ଏହି ପୋଥିରେ ମଧ୍ୟ ମହାନିତ୍ୟ-ମଣ୍ଡଳର ବର୍ଣ୍ଣନା ଦିଆ ଯାଇଛି ।

"ଅନ୍ଧାର ଉଜ୍ଜ୍ୱଳ ନୋହେ ରାତ୍ରି ଦିନ ଏକ,
ଚ଼ନ୍ଦ୍ର ସୂର୍ଯ୍ୟ ସେ ଠାବରେ ହୋଇଛନ୍ତି ଦୀପ ।
ଚ଼ାରି ଯୋଗ ତହିଁ ହୋଇଛନ୍ତି ଏକ କୂଳ,
ଶୁଭ ଲଗ୍ନ ନାହିଁ ତହିଁ ସର୍ବଦା ମଙ୍ଗଳ ।
ମହାନିତ୍ୟ ମଣ୍ଡଳରେ ପ୍ରବେଶ ହୋଇବ,
ତେବେ ନିଜ ମହିମାକୁ ଦର୍ଶନ ପାଇବ"। -ଅଷ୍ଟମ ଅଧ୍ୟାୟ

"ତାଙ୍କୁ ପାଇଲେ ନିଜକୁ ପାଇବ । ତାଙ୍କର ଦର୍ଶନରେ ଆପଣାର ଦର୍ଶନ ହେବ"। ଭୀମ ଭୋଇ ଏହି ପଦଟିରେ ଉପନିଷଦ ସମେତ ଭାରତୀୟ ଆଧ୍ୟାତ୍ମ ପରମ୍ପରାର ଅସଲ ବାକ୍ୟଟିକୁ ଅତ୍ୟନ୍ତ ସହଜରେ କହି ଦେଇଛନ୍ତି । ତେଣୁ ମହାନିତ୍ୟ-ମଣ୍ଡଳ ଦୂରରେ ନୁହେଁ, ନିଜ ଭିତରେ ଆମ ଅନୁଭବର ସର୍ବୋଚ୍ଚ ସୋପାନ ହୋଇ ଅବସ୍ଥିତ ରହିଛି । ନିଜର ଗୋଟିଏ ଭଜନରେ ଭୀମ ଭୋଇ କେତେ ଅଳପ କଥାରେ ସେହି ବଡ଼ କଥାଟିକୁ କହିଛନ୍ତି -

"ପାଶେ ପାଶେ ଅଛି ହେ ନଦିଶୁଛି ।
ଆବୋରି ରହିଛି ହେ" ॥

ତାଙ୍କୁ ପାଇବାକୁ ହେଲେ, ପାଖରେ ଦେଖିବାକୁ ହେଲେ; ଯଥାର୍ଥ ଭକ୍ତିର ଯୋଗ୍ୟ ହେବାକୁ ପଡ଼ିବ ।

ଭୀମ ଭୋଇଙ୍କୁ ଯେତେବେଳେ ମୋଟେ ପାଞ୍ଚବର୍ଷ ବୟସ, ସେତେବେଳେ ତାଙ୍କ ବାପାଙ୍କର କାଳ ହୋଇ ଯାଇଥିଲା । ଭୀମଙ୍କର ମାଆଙ୍କ ନାମ ହେଉଛି , ଗୁରୁବାରୀ ଭୋଇ (ମହରଗୀ)। ବାପାଙ୍କର କାଳ ହୋଇଯିବାରୁ ସହାୟହୀନ ପରିବାରଟି ରେଢ଼ାଖୋଲର କଙ୍କଣପଡ଼ା ଗ୍ରାମକୁ ଯାଇ ଭୀମଙ୍କ ଖୁଡୁତା ଧନେଶ୍ୱର ଭୋଇଙ୍କ ପାଖରେ ବାସ କଲେ । ଧନେଶ୍ୱର ଗୁରୁବାରୀଙ୍କୁ ଦ୍ୱିତୀୟ ବିବାହ କରିନେଲେ। ବାଳକ ଭୀମ ସେତେବେଳେ ଗାଈ ଜଗି ପରିବାରର ଅନ୍ନ ସଂସ୍ଥାନରେ ଯତ୍‌କିଞ୍ଚିତ୍ ସାହାଯ୍ୟ କରୁଥିଲେ । ତାଙ୍କର ମାଆ ଧାନ କୁଟୁଥିଲେ । କକା ଅନ୍ୟମାନଙ୍କ ଜମିବାଡ଼ିରେ ମୂଲ ଲାଗୁଥିଲେ । ସେତେବେଳର ଯାବତୀୟ ଦାରିଦ୍ର୍ୟଜନିତ ଯାତନା ଭୀମ ଭୋଇଙ୍କର ବିଭିନ୍ନ ପୋଥିରେ ବଡ଼ କରୁଣ ଭାବରେ ବର୍ଣ୍ଣିତ ହୋଇ ରହିଛି।

ଗାଈ ଜଗିବା ସମୟରେ ଭୀମ ଭୋଇ ସାଥୀମାନଙ୍କର ମେଳରେ ଗୀତ ଗାଉଥିଲେ । ସେତେବେଳେ ଯେଉଁଭଳି ଗୀତ ସବୁ ଲୋକ ମୁଖରେ ପ୍ରଚ଼ଳିତ ଥିଲା, ଭୀମ ସେଗୁଡ଼ିକୁ ଅନୁକରଣ କରି ନିଜେ ବି ଗୀତ ଲେଖୁଥିଲେ । ଭୀମ ଭୋଇଙ୍କ ନାମରେ ଏବେ ମଧ୍ୟ ଏକାଧିକ ରସର କେଳି, ଜାଇଫୁଲ, ହଲିଆ ଗୀତ ଓ ବଉଳ ଗୀତମାନ ପ୍ରଚ଼ଳିତ ରହିଛି । କହିବା ବାହୁଲ୍ୟ, ସେତେବେଳେ ରାଧା, କୃଷ୍ଣ ଓ ଗୋପୀମାନଙ୍କର କଥାଗୁଡ଼ିକ ହିଁ ଲୋକାୟତନ ଓ ଲୋକ ବିନୋଦନର ସ୍ତରଗୁଡ଼ିକୁ ପ୍ରସରି ଯାଇଥିଲା । ଭୀମ ଭୋଇ ମଧ୍ୟ ଆପଣାର ସେହି ପ୍ରଥମ କାଳୀନ ଗୀତ ଗୁଡ଼ିକରେ ସେଗୁଡ଼ିକୁ ସାମଗ୍ରୀ ରୂପେ ବ୍ୟବହାର କରିଥିଲେ ।

ରେଢ଼ାଖୋଲର ଏକ ପାର୍ବତ୍ୟ ଅଂଚ଼ଳରେ କେତୋଟି ଗୁମ୍ଫାରେ ସନ୍ଥମାନେ ବର୍ଷ ବର୍ଷ ଧରି ବାସ କରି ଆସୁଥିଲେ । ପଞ୍ଚସଖାଙ୍କ ପରେ ଗିରି କନ୍ଦରାର ସନ୍ଥମାନେ ଯେପରି ଓଡ଼ିଶାର ନାନା ସ୍ଥାନରେ ଅଲେଖ, ଶୂନ୍ୟ ଓ ବ୍ରହ୍ମ ଉପାସନାକୁ ବଂଚ଼ାଇ ରଖି ଆସିଥିଲେ, ଏହାକୁ ହୁଏତ ସେହିପରି ଏକ ସ୍ଥାନ ବୋଲି କୁହାଯାଇ ପାରିବ । ଏହି ସାଧୁମାନଙ୍କ ପାଖରେ ଖୁବ୍ ସମ୍ଭବ ସେତେବେଳକୁ ମହିମା ଗୋସାଇଁଙ୍କର ସନ୍ଦେଶ ଆସି ପହଞ୍ଚି ସାରିଥିଲା । ଭୀମ ଭୋଇ ମଧ୍ୟ ସେଗୁଡ଼ିକର ସ୍ପର୍ଶ ପାଇ ସାରିଥିଲେ । ସମାଜରେ ଜାତି ବୋଲି କିଛି ନାହିଁ। ସମସ୍ତେ ସେହି

ଭଗବତ ମହିମାରୁ ହିଁ ଜାତ ହୋଇଛନ୍ତି । ଏହା ତାଙ୍କର ଅନ୍ତରକୁ ନିଶ୍ଚୟ ସ୍ପର୍ଶ କରିଥିବ । ଆପଣାର ଅସହାୟ ଜୀବନରେ ସେ ତାହାକୁ ଏକ ଉନ୍ମୋଚନକାରୀ ନୂତନ ଆଲୋକ ରୂପେ ଗ୍ରହଣ କରି ନେଇଥିବେ । ଅତ୍ୟନ୍ତ ଉତ୍ସାହରେ ସେହି କଥାଗୁଡ଼ିକୁ ଅନ୍ୟମାନଙ୍କ ଆଗରେ କହିବାକୁ ବି ଆରମ୍ଭ କରି ଦେଇଥିବେ । ମାତ୍ର ତାଙ୍କରି ଏହି ଆଚରଣ ସବର୍ଣ୍ଣମାନଙ୍କ ପାଖରେ ଅସହ୍ୟ ହୋଇଥିବ । ସେମାନେ ରୁଷ୍ଟ ହୋଇ ହୁଏତ ବାଳକ ଭୀମଙ୍କୁ ନେଇ କୂଅ ଭିତରେ ପକାଇ ଦେଇଥିବେ । ଏହା ବାହାରକୁ ଯେତେ ଅତ୍ୟନ୍ତ ନୃଶଂସ ବୋଲି ମନେ ହେଉଥିଲେ ମଧ୍ୟ ଆଦୌ ଅସମ୍ଭବ ନୁହେଁ ।

ଭୀମ ଭୋଇ ଜନ୍ମରୁ ଅଂଧ ନଥିଲେ । ମାତ୍ର ଅତ୍ୟନ୍ତ ଶୈଶବ କାଳରୁ ସେ ନିଜର ଆଖି ଦୁଇଟିକୁ ହରାଇଥିଲେ । ସେ କିପରି ଆଖି ହରାଇଲେ, ସେ ବିଷୟରେ ମଧ୍ୟ କେତେ ପ୍ରକାରର କାହାଣୀ ରହିଛି । ଥରେ ଗାଈମାନଙ୍କ ସାଙ୍ଗରେ ଥିଲାବେଳେ ଭୀମ କୂଅରେ ପଡ଼ି ଯାଇଥିଲେ । ଏପରି ଏକ ଅନୁମାନ ରହିଛି ଯେ ଗାଆଁର ଲୋକମାନେ ରୁଷ୍ଟ ହୋଇ ତାଙ୍କୁ କୂଅରେ ପକାଇ ଦେଇଥିଲେ ।

ଘଟଣାଟି ଯଦି ଏହିପରି ଭାବରେ ଘଟିଥାଏ, ତେବେ କହିବାକୁ ହେବ ଯେ, ସେତେବେଳକୁ ଭୀମ ଭୋଇଙ୍କୁ ଷୋହଳ ବର୍ଷ ବୟସ ହୋଇଥିଲା । କିମ୍ବଦନ୍ତୀ ରହିଛି ଯେ, ସିଏ କୂଅରେ ପଡ଼ିଯିବା ପରେ ଅନ୍ୟମାନେ ଯେତେବେଳେ ଦଉଡ଼ି ପକାଇ ତାଙ୍କୁ କୂଅ ଭିତରୁ ବାହାର କରିବାକୁ ଚେଷ୍ଟା କଲେ, ଭୀମ ଭୋଇ କୁଆଡ଼େ ଅକାତର ଭାବରେ ସେମାନଙ୍କୁ କହିଲେ, 'ଯେଉଁ ପରମ ପ୍ରଭୁ ତାଙ୍କୁ ଅନ୍ଧ କରି ଏତେ ଦୁଃଖରେ ଆଣି ପକାଇଛନ୍ତି, ସିଏ ନିଜେ ଆସି ତାଙ୍କୁ ସେଠାରୁ ଉଦ୍ଧାର ନକରିବା ପର୍ଯ୍ୟନ୍ତ ସେ କଦାପି କୂଅ ଭିତରୁ ଉଠିବେ ନାହିଁ' ।

ପରିପୂରକ ଭାବରେ ତାହା ସହିତ ଏହି କଥାଟି ମଧ୍ୟ ରହିଛି ଯେ, ତାଙ୍କର ଏହି ଅବିଚଳିତ ବିଶ୍ୱାସରେ ମୁଗ୍ଧ ହୋଇ ସ୍ୱୟଂ ମହିମା ଗୋସାଇଁ ସେଠାରେ ଆସି ଉପସ୍ଥିତ ହୋଇଥିଲେ । ଭୀମ ଭୋଇଙ୍କୁ କୂଅ ଭିତରୁ ଉଦ୍ଧାର କରିଥିଲେ । ଏହି କଥାଟି ଏବେ ମଧ୍ୟ ଏକ ଲୋକ ପ୍ରବାଦ ରୂପେ ରହିଛି ।

ଚତୁର୍ଦ୍ଦଶ ଅଧ୍ୟାୟରେ ଭୀମ ଭୋଇ ଯଥାର୍ଥ ଭକ୍ତର ଯୋଗ୍ୟ ହେବାକୁ ହେଲେ ଭକ୍ତିଲାଗି ପ୍ରଚଳିତ ଯାବତୀୟ ବାହ୍ୟ ବିଧି ଅନାବଶ୍ୟକ ବୋଲି କହି ଦେଇଛନ୍ତି,

"ସେ ବ୍ରହ୍ମର ଦର୍ଶନ ଭଜନ ସବୁ ନାସ୍ତି,
ଚିତା ପଇତା ଆବର ଗୋମୟ ବିଭୂତି ।
ଡୋର କଉପୁନୀ ଆଦି କିଛି ନାହିଁ ତହିଁ,
ନିଷ୍କଳଙ୍କ ବ୍ରହ୍ମ ସେ ଯେ କଳଙ୍କ ନଥାଇ" ।

ଏହି ଦୁଇଟି ପଦରେ ଆନୁଷ୍ଠାନିକ ମହିମା ଧର୍ମ ଭିତରେ ପ୍ରଚଳିତ ବିଧିଗୁଡ଼ିକ ମଧ୍ୟ ଅନାବଶ୍ୟକ ବୋଲି ଘୋଷଣା କରାଯାଇଛି । ହୁଏତ ଏଇଥି ସକାଶେ କ୍ରମେ ଯୋରନ୍ଦା ଓ ଖଲିଆ ପାଲି ଅଂଚଳରେ ସେହି ଗୋଟିଏ ମହିମା ଧର୍ମ ଦୁଇଟି ଭିନ୍ନ ପଥରେ ପରିଣତ ହୋଇ ପରସ୍ପର ଠାରୁ ଅଲଗା ହୋଇ ଯାଇଛି । ଭୀମ ଭୋଇ ଅସଲ ଭକ୍ତ ପାଇଁ ଅନ୍ୟ ଏକ ବାଟର ସୂଚନା ଦେଇଛନ୍ତି ।

"ଯେଡ଼େ ପ୍ରଭୁଙ୍କୁ ଭଜିବୁ କର ତେଡ଼େ ବୁଦ୍ଧି,
ନ୍ୟାୟକୁ ବିଚାରିଥିବୁ ଯେସନେ ବାରିଧି ।
ରୂପେ ଥାଇ ଅରୂପକୁ ଲଗାଅ ତୁ ଦୃଷ୍ଟି,
ତେବେ କ୍ଷୟ ହେବ ତୋର କଳ୍ପନା ଅରିଷ୍ଟି ।
ବେଦେ ଥାଇ ନିର୍ବେଦକୁ ଧ୍ୟାନ ଯେ କରିବୁ,
ବେଦାନ୍ତ ଛାଡ଼ିଲେ ଅରୂପରେ ଲୀନ ହେବୁ ।
ଦେହ ଧରିଅଛୁ ଅଦେହକୁ କର ଆଶା ,
ତେଣୁ ତୁ ପାଇବୁ ବାବୁ ନିଶବଦେ ବସା" ।

ଭୀମ ଭୋଇ ଆପଣାର ଉପଲବ୍ଧି-ମାର୍ଗଟିକୁ "ବ୍ରହ୍ମଜ୍ଞାନ-ଭକ୍ତିଯୋଗ ମାର୍ଗ" ବୋଲି କହିଛନ୍ତି । ଭାତ ଭାତ ବୋଲି ଜପି ହେଲେ ଯେପରି ଭୋକ ପଳାଇ ଯାଏ ନାହିଁ, ସେହିପରି ରାମ ରାମ କହିଲେ ମଧ୍ୟ ପାପକ୍ଷୟ ସମ୍ଭବ ହୁଏନାହିଁ । କାରଣ ଆହାର ଭକ୍ଷିଲେ ସିନା ଆତ୍ମା ବୋଧ ହେବ,

ନାମକୁ ଭଜିଲେ ସିନା ମୁକତି ଲଭିବ ।

'ବ୍ରହ୍ମ ନିରୁପଣ ଗୀତା'ର ଦ୍ୱାଦଶ ଅଧ୍ୟାୟରେ ଆହାରକୁ ଜପ ନକରି ଆହାର ଭକ୍ଷିବାର କ୍ରମଟିକୁ ଦର୍ଶାଇ ଦିଆଯାଇଛି । ସେହି କ୍ରମଟି ହେଉଛି, ନାମକୁ ଭଜିବ, ନାମର ଶ୍ରବଣ କରିବ, ତା'ପରେ ପଢ଼ିବ, ବୁଝିବ, ଭେଦ କରିବ ଅର୍ଥାତ୍ ବିବେକ ଲଗାଇବ, ତେଜିବ, ଧରିବ, ଚ଼ିହ୍ନିବ, ବାନ୍ଧିବ, ଜାଗ୍ରତରେ ଧରିବ ଓ ମଜିଯିବ । ଭୀମ ଭୋଇଙ୍କ ଭାଷାରେ, 'ମଜ୍ଜି ପାରିଲେ ବ୍ରହ୍ମରେ ତେବେ ଲୀନ ହୋଇ'

ଜ୍ଞାନ ଦୀପାବଳୀକୁ ହୃଦୟରେ ଚ଼େତାଇ ପାରିଲେ, ଗୁରୁକୃପାର ଭାଜନ ହୋଇ ଜ୍ଞାନର କତୁରୀରେ ମଧ୍ୟବର୍ତ୍ତୀ ସକଳ ଅର୍ଦ୍ଧସତ୍ୟକୁ କାଟି ପକାଇବାକୁ ପଡ଼ିବ । ତେବେ ଯାଇ ମହିମା ପ୍ରସନ୍ନ ହେବେ ।

ମହିମା ପ୍ରସନ୍ନ ହେଲେ କି କରିବ କାଳ,
ସିଂହପ୍ରାୟ ଫେରୁଥାଇ ଭୁବନ ମଣ୍ଡଳ,
ମହିମା ପ୍ରସନ୍ନ ହେଲେ କି କରିବ ଯମ,
ପାଦତଳେ ପଡ଼ି, ଯମ ବୋଲିବଟି କ୍ଷମ ।
ମହିମା ପ୍ରସନ୍ନ ହେଲେ କି କରିବ ମୃତ୍ୟୁ,
ଅନନ୍ତ ଗର୍ଭେ ରହିବ ପାଇ ନିଜ ହେତୁ ॥

*- ବ୍ରହ୍ମ ନିରୂପଣ ଗୀତା, ଦଶମ ଅଧ୍ୟାୟ -*

ଗୋଟିଏ ଚ଼ଉତିଶାରେ ଭୀମ ଭୋଇ ଭକ୍ତର ଲକ୍ଷଣମାନ ବର୍ଣ୍ଣନା କରିଛନ୍ତି- "ଭକତ ଲକ୍ଷଣ ଅଟଇ ନିର୍ଗୁଣ କାହାକୁ ଅନ୍ତର ନାହିଁ,
ଭାଇ ବନ୍ଧୁ ପ୍ରାୟ ସମାନରେ ଚ଼ାହିଁ ଏକ ଆତ୍ମା ମଣୁଥାଇ ରେ,
ଭଜୁଥାଇ ମୋ ନାମ,
ଭାବେ ମୋ ପଦେ ପଶେ ଶରଣ" ।।

ଯାବତୀୟ ଗାରକୁ ଅତିକ୍ରମ କରି ଚ଼ାଲିଗଲେ, ମନୁଷ୍ୟ ଅନୁଭବରେ ଯାଇ ପହଞ୍ଚେ । ସେହି ଅନୁଭବ ହେଉଛି ଅନ୍ତର୍ଗତ ଅନୁଭବ ।

ସନ୍ଥମାନେ ଆଗ ଆପଣାର ଭିତରେ ଅନୁଭବ କରନ୍ତି । ନିଜକୁ ଠାବ

କରନ୍ତି । ସେହି ଅନୁଭବକୁ ନେଇ ସେମାନେ ସଂସାର ଭିତରକୁ ଯାଆନ୍ତି ।

ଭୀମ ଭୋଇ ବ୍ରହ୍ମାନୁଭବର କବି, ତେଣୁ ସେହି ବ୍ରହ୍ମ ଦ୍ୱାରା ପରିପୂର୍ଣ୍ଣ ହୋଇଥିବା ଏହି ସଂସାରର ବି କବି । ସଂସାରର ମଣିଷ ସମାଜ ପ୍ରତି ଅନ୍ତର୍ଗତ ଶ୍ରଦ୍ଧା ରଖି ସେହିମାନଙ୍କର ଅତ୍ୟନ୍ତ ସନ୍ନିକଟ ହୋଇ ରହିଥିବା କବି । ଅତ୍ୟନ୍ତ ସ୍ପଷ୍ଟ କଥା ଯେ, ଏକ ଅନ୍ତର୍ଗତ ଓ ଭାବଗତ ସଂବେଦନଶୀଳତା ଦ୍ୱାରା ସେ ଆପଣାର ବ୍ରହ୍ମାନୁଭବ ସହିତ ଏହି ମଣିଷର ସଂସାର ଆଡ଼କୁ ହିଁ ଆକର୍ଷିତ ହୋଇ ଆସିଥିଲେ।

ଓଡ଼ିଆ ସାହିତ୍ୟରେ ଏହି ସଂବେଦନଶୀଳତାର ପଟାନ୍ତର ନାହିଁ । ସମ୍ଭବତଃ ବିଶ୍ୱ ସାହିତ୍ୟରେ ତାହା ବିରଳ ହୋଇ ରହିଅଛି । ରକ୍ତମାଂସ ଶରୀରର ଜୀବନ ସଂସ୍ଥାନରେ ସେ ସମାଜର ସବୁଠାରୁ ତଳେ ଏକ ଅତି ନିମ୍ନ ସ୍ତରରେ ଜନ୍ମ ହୋଇ ଥିବାରୁ ତାଙ୍କୁ ସାଧାରଣ ସମ୍ବଳହୀନ ଯେ କୌଣସି ମଣିଷ ପରି ଏଠି ସବୁ ପ୍ରକାରର କଷ୍ଟ ସହିବାକୁ ପଡ଼ିଥିଲା । ସେହି ଦୁଃଖକୁ ଅଙ୍ଗେ ନିଭାଇ ଥିବାରୁ ଅନ୍ତର୍ଗତ ଉପଲବ୍ଧି ପରେ ସେ ସଂସାରର ଦୁଃଖକୁ ମଧ୍ୟ ଅତ୍ୟନ୍ତ ସହଜରେ ଅଙ୍ଗେ ନିଭାଇ ପାରିଲେ । ତାଙ୍କର ଆଧ୍ୟାତ୍ମ ଉପଲବ୍ଧି ତାଙ୍କୁ ସଂସାର ଭିତରୁ ଆପଣା ଭିତରକୁ ମୋଟେ ଅଲଗା କରି ଟାଣି ନେଲାନାହିଁ । ସିଏ ସେହି ଉପଲବ୍ଧିଟିକୁ ନେଇ ସଂସାର ଭିତରକୁ ଆସିଲେ, ସଂସାର ଭିତରେ ରହିଲେ । ସଂସାର ସହିତ ଯୁକ୍ତ ହୋଇ ରହିଲେ । ଅକଳିତ ଭାବରେ ସଂବେଦନଶୀଳ ହୋଇ ରହିଲେ । ପ୍ରାଣୀଙ୍କର ଉଦ୍ଧାର ଚାହିଁଲେ, ସଂସାରର ଉଦ୍ଧାର ପାଇଁ ପ୍ରାର୍ଥନା କଲେ । ଭକ୍ତ ତପସ୍ୟା ବଳରେ ଯେଉଁ ବରଟିକୁ ଲାଭ କରି ପରିପୂର୍ଣ୍ଣତା ଲାଭ କରେ, ଭୀମ ଭୋଇ ଠିକ୍ ସେହି ତପସ୍ୟା କରିଥିଲେ । ବ୍ରହ୍ମାଣ୍ଡ ପାଇଁ ଜଣାଣ କରି ଭୀମ ଭୋଇ କହିଛନ୍ତି -

"କାହିଁ ମୁଁ ଲୁଚିବି କେମନ୍ତେ ବଞ୍ଚିବି ପଳାଇବି କେଉଁ ପଥେ,
ଜଗତ କଷଣ କେତେ ମୁଁ ସହିବି ବିପତ୍ତି ପଡ଼ିବ ଯେତେ" ।

ଏହି ପିଣ୍ଡରେ ଯିଏ, ବ୍ରହ୍ମାଣ୍ଡରେ ମଧ୍ୟ ସିଏ । ସେହି କାରଣରୁ ହିଁ ପିଣ୍ଡ ବ୍ରହ୍ମାଣ୍ଡକୁ ଲୋଡ଼େ । ବ୍ରହ୍ମାଣ୍ଡ ପାଇଁ ଉଚ୍ଛନ୍ନ ହୁଏ । ଯେଉଁ ସାଧନା ପିଣ୍ଡ ଭିତରେ ଅତ୍ୟନ୍ତ ଉତ୍ତେଜିତ ଓ କାତର ଭାବରେ ଆପଣାକୁ ବାନ୍ଧିରଖି ବ୍ରହ୍ମାଣ୍ଡଠାରୁ ସମସ୍ତ ସୂତ୍ର ଛିନ୍ନ କରିବାକୁ ମନେ କରୁଥାଏ, ତାହା ହୁଏତ ପିଣ୍ଡର ବି ଯଥାର୍ଥ ପରିଚ୍ଛ

ପାଇ ନଥାଏ । ସଂସାର ବିଷୟରେ ନିବେଦନ କରିବାକୁ ସଛ ହିଁ ସେଥିଲାଗି ଭଗବାନଙ୍କ ପାଖରେ ଆପଣାର ଏକ ପରମ କର୍ତ୍ତବ୍ୟ ବୋଲି ବିଚାରିଥାଏ ।

ମହିମା ଧର୍ମ ଜାତି ଜାତି ମଧ୍ୟରେ କୌଣସି ବାଧା ବା ପ୍ରାଚୀରକୁ ସ୍ୱୀକାର କରିନାହିଁ । ସମତ୍ୱର ସାଧନା ମଣିଷର ସମାଜ ଭିତର ମଧ୍ୟ ସେହି ସମତ୍ୱ ପ୍ରତିଷ୍ଠାର ବାସନା ଆଡକୁ ଅନୁପ୍ରାଣିତ କରି ନେଇଛି । ସମାଜର ଯାବତୀୟ କ୍ଷୁଦ୍ରାୟତନକୁ ଭାଙ୍ଗି ଏକ ବୃହତ୍ତର ଧର୍ମ ଭୂମିରେ ସମସ୍ତଙ୍କୁ ଆଣି ସମ୍ମିଳିତ କରାଇ ଦେବାର ଆହ୍ୱାନ ଦେଇଛି । ମହିମା ଧର୍ମ ଆପଣାକୁ ସବୁ ଜାତି ଲାଗି ସମାନ ଭାବରେ ଉନ୍ମୁକ୍ତ କରି ରଖିଛି । "ଯଦି ସତ୍ୟଧର୍ମ ତହିଁ ରହେ ବ୍ରହ୍ମ, ନ ବାରନ୍ତି ସେ ଯେ ଉଚ୍ଚ ନୀଚ" ॥

ଭୀମ ଭୋଇ ଏକାଧିକ ପ୍ରସଙ୍ଗରେ ପରମ ବ୍ରହ୍ମପିତାଙ୍କୁ ପିତା ବୋଲି ସମ୍ବୋଧନ କରିଛନ୍ତି । ସ୍ତୁତି ଚିନ୍ତାମଣିରେ, "ସିଏ ମୋହର ପିତାର ରଚିଲା ଜଗତ ଖେଳ କରୁଅଛି ବସି" ବୋଲି କହିଛନ୍ତି । "ପିତା ଅଟନ୍ତି ମୋ ଅନାଦି ଠାକୁର, ମାତା ଆଦିଶକ୍ତି ନାରୀ", ବୋଲି ତାଙ୍କର ଗୋଟିଏ ପଦ ମଧ୍ୟ ରହିଛି ।

ଭୀମ ଭୋଇ ଜାତି ମାନିଲେ ନାହିଁ, ସମାଜକୁ ମାନିଲେ ନାହିଁ, ସଂପ୍ରଦାୟ ଗୁଡ଼ିକରେ ସର୍ବଶ୍ରେଷ୍ଠ ଖୁଣ୍ଟରୂପେ ପ୍ରତିଷ୍ଠିତ ହୋଇ ରହିଥିବା ଦେବଦେବୀଙ୍କୁ ମଧ୍ୟ ମାନି ନଥିଲେ । ତତ୍କାଳୀନ ଓଡ଼ିଶାର ଧର୍ମାୟତନ ଓ ଧର୍ମ ସୀମାଗୁଡ଼ିକରେ ଇଷ୍ଟ ଦେବତା ରୂପେ ସ୍ୱୀକୃତ ହୋଇ ରହିଥିବା ଜଗନ୍ନାଥଙ୍କୁ ମଧ୍ୟ ଅତିକ୍ରମ କରି ଆଗକୁ ଚାଲିଗଲେ । ମହିମା ଧର୍ମରେ ପୁଣି ଏପରି ଏକ କାହାଣୀ ରହିଛି: ମହିମା ଗୋସାଇଁ ତାଙ୍କର ନୂତନ ଧର୍ମର ପ୍ରଚାର କରିବାକୁ ଆରମ୍ଭ କରନ୍ତେ, ନୀଳାଚଳ କ୍ଷେତ୍ରରୁ ସ୍ୱୟଂ ଜଗନ୍ନାଥ ଆସି କପିଳାସ ଠାରେ ମହିମା ଗୋସାଇଁଙ୍କୁ ଭେଟିଥିଲେ । ତାଙ୍କଠାରୁ ବ୍ରହ୍ମଜ୍ଞାନ ଭକ୍ତିଯୋଗର ଦୀକ୍ଷା ଗ୍ରହଣ କରିଥିଲେ ।

ମହିମା ଧର୍ମର ଶିଷ୍ୟ-ପରମ୍ପରାରେ ପ୍ରଥମ ଶିଷ୍ୟ ଗୋବିନ୍ଦ ବାବା ନାମରେ ଖ୍ୟାତ ହେଲେ । ଓଡ଼ିଶାର ଧର୍ମ କଳ୍ପନାରେ ଜଗନ୍ନାଥ ହେଉଛନ୍ତି, ବିଷ୍ଣୁଙ୍କର ନବମ ଅବତାର । କଥିତ ଅଛି ଯେ, କପିଳାସଠାରେ ମହିମା ଗୋସାଇଁଙ୍କ ସହିତ ଭେଟ ହେବାପରେ ଜଗନ୍ନାଥଙ୍କ ଠାରୁ ଅବତାର ଗ୍ରହଣ କରିଥିବାର ସମସ୍ତ ଅପରାଧ

କଟି ଯାଇଥିଲା । ସେ ନିଷ୍କାମ ଏବଂ ନିର୍ମୋହ ଜ୍ଞାନ ମାର୍ଗରେ ଦୀକ୍ଷିତ ହୋଇଥିଲେ । ସେହି ଉପାଖ୍ୟାନଟିକୁ ଭୀମଭୋଇ 'ନିର୍ବେଦ ସାଧନ'ରେ ବର୍ଣ୍ଣନା କରିଛନ୍ତି -

"ବୋଲନ୍ତି ଅନାଦି ପୁରୁଷ, ଏ ପରା ଜଗନ୍ନାଥ ଦାସ ।
ବଡ଼ ଦେଉଳେ ବାସ ସ୍ଥିତି, ଏ ଯେ ମାନବ ବିଷ୍ଣୁମୂର୍ତ୍ତି ।
ମୁଁ ଯହୁଁ ହେଲି ଅବତାର, ତେଜିଲା ଶ୍ରୀନୀଳ କନ୍ଦର" ।

ସେହି ପ୍ରସଙ୍ଗରେ ସ୍ୱୟଂ ଅନାଦି ବ୍ରହ୍ମ ଜଗନ୍ନାଥଙ୍କୁ କହିଛନ୍ତି -

"ତୋ' ଯେଉଁ ଦଶ ଅବତାର, ଗୁରୁ ଦର୍ଶନେ ଗଲା ପାର ।
ମାନବ ବିଷ୍ଣୁ ଭଗବାନ, ଏ ଚାରିଯୁଗେ ଅବତୀର୍ଣ୍ଣ ।
ସେ ପାପମାନ ଏବେ ତୋର, ପୋଡ଼ିଲା ବ୍ରହ୍ମ ଯେ ଅନଳ" ।

ଅର୍ଥାତ୍, ଶ୍ରୁତି ନିଷେଧ ଗୀତା'ରେ ଯେପରି ବଟବୃକ୍ଷର ପତ୍ର-ପରିମାଣରେ ବ୍ରହ୍ମା, ବିଷ୍ଣୁ, ରାମ, କୃଷ୍ଣ ପ୍ରଭୃତି ଅବତାରମାନେ ଆର୍ବିଭୂତ ହୋଇ ତା'ପରେ ସେହି ପରମ ପାଦରେ ବିଲୀନ ହୋଇ ଯାଇଛନ୍ତି ବୋଲି କୁହାଯାଇଛି ।

ଏହି ବ୍ୟାଖ୍ୟାନରେ ଶ୍ରୀଜଗନ୍ନାଥ ଚେତନାଠାରୁ ପ୍ରତିମାକୁ ଅଲଗା କରି ଦେଖାଇ ଦିଆଯାଇଛି । ଭୀମ ଭୋଇଙ୍କର ବର୍ଣ୍ଣନା ଅନୁସାରେ ଯୁଗେ ଯୁଗେ ଅନେକ ଅବତାରଙ୍କର କଳ୍ପନା ହୋଇଛି । ଏହି ମଣିଷମାନେ ହିଁ ସେହି ଅବତାର ଗୁଡ଼ିକର କଳ୍ପନା କରିଛନ୍ତି । ସେହି ଅବତାରମାନଙ୍କୁ ନିମିତ୍ତ ରୂପେ ବ୍ୟବହାର କରି ସେମାନେ ସର୍ବୋଚ୍ଚ ପରମ କର୍ତ୍ତାର ଉପଲବ୍ଧି କରିବାକୁ ଇଚ୍ଛା କରିଛନ୍ତି ।

ନାନା କାରଣରୁ, ହିଁ ଚରମ ସାଧ୍ୟରୂପେ ଆରାଧନା କରିବାର ଭ୍ରମରେ ପଡ଼ି ଯାଇଛନ୍ତି । ଆଧ୍ୟାତ୍ମକୁ ନାନାବିଧ ଧାର୍ମିକତାରେ ପରିଣତ କରି ଦେଇଛନ୍ତି, ତେଣୁ ବାଟ ହୁଡ଼ିଛନ୍ତି । ଅବତାରର ବିହିତ ସୀମାଗୁଡ଼ିକୁ ଲଂଘନ କରି ପିତୁଳାମାନେ ପୌତ୍ତଳିକତାର ଅତ୍ୟାଗ୍ରହରେ ପଡ଼ି ଶେଷକୁ ମଣିଷମାନଙ୍କୁ ଭ୍ରଷ୍ଟ କରାଇଛନ୍ତି । ଧର୍ମ ଉପଲବ୍ଧିର ଅସଲ ପଥଗୁଡ଼ିକୁ ଆହୁରି ଅଧିକ ଦୂରବର୍ତ୍ତୀ କରି ରଖିଛନ୍ତି। ଧର୍ମାହଙ୍କାରର ବିଭିନ୍ନ ଅସୁବିଧା ମଧ୍ୟରେ କେତେ କନ୍ଦଳ ଲାଗିଛି । ଧର୍ମ ଭାବର ହ୍ରାସ ହୋଇଛି, ଏବଂ ତଦ୍ୱାରା ଅକଲ୍ୟାଣ ହିଁ ହୋଇଛି ।

ଏହି ଇତିହାସକୁ ଭୀମ ଭୋଇ ଆପଣାର ଶୈଳୀରେ ସ୍ୱୟଂ ଅନାଦି ବ୍ରହ୍ମଙ୍କର

ମୁଖରେ ହିଁ ବର୍ଣ୍ଣନା କରିଛନ୍ତି । ଅବତାରମାନେ ବଡ଼ିମା ପଣ କରିଛନ୍ତି , ତେଣୁ ଅନାଦି ବ୍ରହ୍ମ ସେମାନଙ୍କର ପଦଗୁଡ଼ିକୁ ହରଣ କରି ନେଇଛନ୍ତି ବୋଲି କହିଛନ୍ତି । ଭୀମ ଭୋଇଙ୍କ ସମୟରେ ଜଗନ୍ନାଥ ଅନୁଷ୍ଠାନଟି ଠିକ୍ ସେହିପରି ଏକ ବଡ଼ିମା ପଣର ସନ୍ତକ ଭାବରେ ଅବସ୍ଥିତ ରହିଥିଲା । ସାମନ୍ତମାନଙ୍କ ଆଖିରେ ନୟନାଭିରାମ ହୋଇ ଦିଶିବାକୁ ଜଗନ୍ନାଥଙ୍କୁ ମଧ୍ୟ ସାମନ୍ତ କରି ସଜାଇ ଦିଆଯାଇ ସାରିଥିଲା ।

ପଞ୍ଚସଖା ଆପଣାର ସାହିତ୍ୟ ମଧ୍ୟଦେଇ ସେହି ଚେ଼ତନାକୁ ବଞ୍ଚାଇ ରଖିବା ଲାଗି ଯାବତୀୟ ପ୍ରୟାସ କରିଥିଲେ ମଧ୍ୟ ପଞ୍ଚସଖାଙ୍କ ପରେ ପ୍ରଧାନତଃ ଏକ ବାହ୍ୟ ସଗୁଣତାର ପ୍ରାବଲ୍ୟ ସେହି ଅନୁଷ୍ଠାନଟିକୁ ଗ୍ରାସ କରି ପକାଇଥିଲା । ଜଗନ୍ନାଥ କାଳକ୍ରମେ ଏକ ରାଜସିକ ଓ ତାମସିକ ଅତ୍ୟାଗ୍ରହର ଶିକାର ହୋଇପଡ଼ିଲେ। ସମ୍ଭବତଃ ସେଇଥି ଲାଗି ଭୀମ ଭୋଇ ଜଗନ୍ନାଥଙ୍କୁ ଅନାଦି ବ୍ରହ୍ମଙ୍କର ସମ୍ମୁଖକୁ ଅଣାଇଲେ ଓ ତାଙ୍କର କଳା ହରଣ କରାଇଲେ। ଏହା ଦ୍ୱାରା ତାଙ୍କର ବଡ଼ିମାକୁ ହରଣ କରାଇଲେ ।

ଭୀମ ଭୋଇ ପ୍ରଚଣ୍ଡ ଦାରିଦ୍ର୍ୟ ସହିଥିଲେ, ନାନା ଅଧର୍ମ ଉପରେ ପ୍ରତିଷ୍ଠିତ ହୋଇ ଥିବା ଆମର ଏହି ସମାଜର ଅନେକ ଗଂଜଣାକୁ ସିଏ ଅଙ୍ଗେ ନିଭାଇ ଥିଲେ । ତାଙ୍କର ଜୀବନ ଚି଼ନ୍ତା ଏକ କଠିଣ ମୂଳଦୁଆ ଉପରେ ଆରମ୍ଭ ହୋଇଥିଲା । ତେଣୁ ସେ ସୋପାନରୁ ସୋପାନକୁ ଆରୋହଣ କରି ଆଧ୍ୟାତ୍ମ ଚି଼ନ୍ତାର ସ୍ତରରେ ଯାଇ ପହଞ୍ଚିଲେ। ତଦନୁରୂପେ ଏକ ଅନନ୍ୟ କବିତ୍ୱ ମାଧ୍ୟମରେ ଆପଣାର ଅନୁଭବ ଗୁଡ଼ିକୁ ସଂସାର ଲାଗି ଅଭିବ୍ୟକ୍ତ କରିଦେଇ ପାରିଲେ । ସେତେବେଳେ ମଧ୍ୟ ସେହି ମୂଳଦୁଆଟି ସହିତ ଚେ଼ରଗୁଡ଼ାକ ଅତ୍ୟନ୍ତ ସୁନିଶ୍ଚିତ ଭାବରେ ଲାଗି ରହିଥିଲା । ଭୀମ ଭୋଇ ଆଗକୁ ଆଗକୁ ଯାଇ ବ୍ରହ୍ମର ଚି଼ନ୍ତା କଲେ । ବ୍ରହ୍ମ ଆଜ୍ଞାର, ଶୂନ୍ୟର ଓ ମହିମାର ଚି଼ନ୍ତା କଲେ। ମାତ୍ର ତାଙ୍କର ଏହିସବୁ ଯାବତୀୟ ଚି଼ନ୍ତା ତାଙ୍କୁ କେବେହେଲେ ତଳି ଛଡ଼ାଇ ନେଇ ପଳାଇ ନଥିଲା। ଏହି ଦୃଷ୍ଟିରୁ ବିଚ଼ାର କଲେ, ଓଡ଼ିଆ ସାହିତ୍ୟରେ ଭୀମ ଭୋଇଙ୍କର ଜୀବନ ଭାବନାର ଏକ ଅନନ୍ୟ ସ୍ଥାନ ରହିଛି । ଏକ ଅନନ୍ୟ ଆବେଦନ ମଧ୍ୟ ରହିଛି । ଚେ଼ତନାର କ୍ଷେତ୍ରରେ ଏତେ ଏତେ ଉଚ୍ଚତାକୁ ସ୍ପର୍ଶ କରିଥିଲେ ମଧ୍ୟ ଜଣେ କବି ଯେ ଜୀବନର ଏତେ ସନ୍ନିକଟ ହୋଇ ରହିପାରେ, ଜୀବନ ସହିତ

ସଂଯୁକ୍ତ ହୋଇ ରହିପାରେ, ଓଡ଼ିଆ ସାହିତ୍ୟରେ ସମ୍ଭବତଃ ଭୀମ ଭୋଇ ହିଁ ସେହି କଥାଟିର ଏକ ଦୃଷ୍ଟାନ୍ତ ହୋଇ ରହିଛନ୍ତି ।

ଊନବିଂଶ ଶତାବ୍ଦୀରେ ଭାରତବର୍ଷର ବିଭିନ୍ନ ପ୍ରାନ୍ତରେ ଏକ ନୂତନ ସଂକ୍ରମଣ ଫଳରେ ଯେଉଁ ଜାଗରଣର ପର୍ବଟି ସଂଘଟିତ ହୋଇଥିଲା , ଅଧିକାଂଶ କ୍ଷେତ୍ରରେ ତାହା ଉପର ସ୍ତରରେ ହିଁ ହୋଇଥିଲା । ସମ୍ଭ୍ରାନ୍ତ-ତତ୍ତ୍ୱଗୁଡ଼ିକର ସ୍ତରରେ ହୋଇଥିଲା । ବଙ୍ଗ ଦେଶରେ ଯେଉଁମାନେ ଏହି ନୂତନ ଆଧ୍ୟାତ୍ମ ତଥା ସାମୂହିକ ଜାଗରଣର ଦ୍ୟୋତନା ଆଣି ଦେଇଥିଲେ, ସେମାନେ ରାଜା ,ମହର୍ଷି , ଆଚାର୍ଯ୍ୟ ଥିଲେ ଓ ଆହୁରି କେତେ କଅଣ ଥିଲେ ।

ଉତ୍ତର ଓ ପଶ୍ଚିମ ଭାରତର ଜାଗରଣକାରୀମାନେ ନୂତନ ସମାଜକୁ "ଆର୍ଯ୍ୟ ସମାଜ" ବୋଲି କହୁଥିଲେ। ଦକ୍ଷିଣ ଭାରତର କେରଳରେ ଆମେ ଏହାର ଏକ ବ୍ୟତିକ୍ରମ ଦେଖିବାକୁ ପାଇଥାଉ । କେରଳରେ ନାରାୟଣ ଗୁରୁ ସମାଜର ଏକ ନିମ୍ନ ଶ୍ରେଣୀରେ ଓ ନିମ୍ନ ଜାତିରେ ଜନ୍ମ ଗ୍ରହଣ କରିଥିଲେ । ଜାଗରଣ ଅସଲ ଖୁଣ୍ଟଗୁଡ଼ିକୁ ସେ ସମାଜରେ ଥିବା ସର୍ବନିମ୍ନ ସ୍ତରରୁ ଦମ୍ଭକରି ପୋତିବାକୁ ଆରମ୍ଭ କରିଥିଲେ।

ଅନେକ ମାନବବାଦୀ ଆଧ୍ୟାତ୍ମ-ସଂସ୍କାରକ ଭାରତବର୍ଷରେ ସମାଜର ଉପର ସ୍ତରରେ ରହିଥିବା ଶିଷ୍ଟମାନଙ୍କ ଭିତରେ ଆପଣାର ସନ୍ଦେଶଗୁଡ଼ିକୁ ପ୍ରଚାର କରିଛନ୍ତି । ସେମାନଙ୍କର ଦୃଷ୍ଟିରେ ଅଧିକ ମାନବିକତାର ସଂଚାରଣ ହୋଇ ପାରିଲେ, ,ସେମାନେ କରୁଣା ଓ ଭ୍ରାତୃତ୍ୱ ଦ୍ୱାରା ପ୍ରେରିତ ହୋଇ ତଳ ଆଡ଼କୁ ମନ କରିବେ । ବର୍ଜିତ ପ୍ରାୟ ହୋଇ ରହିଥିବା ମଣିଷମାନଙ୍କୁ ସ୍ୱୀକାର କରିନେବେ । ତା'ଦ୍ୱାରା ଭାରତୀୟ ସମାଜରେ ପାରସ୍ପରିକତାର ସ୍ଥାପନା ହୋଇ ପାରିବ । ।

ଭୀମ ଭୋଇ ଆମ ସମାଜର ନିମ୍ନତମ ସ୍ତରଟିକୁ ଅଙ୍ଗେ ନିଭାଇଥିଲେ । ଯେଉଁ ଆଦିବାସୀ ଏହି ଭୂମିର ସର୍ବପ୍ରଥମ କର୍ଷଣ କରିଛି, ଏଠି ପ୍ରଥମ ଆଶା ଏବଂ ପ୍ରଥମ ସମ୍ଭାବନାର ଚାରାଗଛ ଗୁଡ଼ିକର ରୋପଣ କରିଛି, ଅଥଚ ସିଏ ତଥାପି ସବାତଳେ ସବୁଠାରୁ ଅଧିକ ଅପଚରା ହୋଇ ରହିଛି । ଭୀମ ଭୋଇ ସେହି ଆଦିବାସୀ ମୂଳଦୁଆ ଭିତରୁ ହିଁ ଜୀବନର ଏକ ଅନ୍ୟ ପତାକା ଓ ଅନ୍ୟ ଘୋଷଣାକୁ ହାତରେ ଧରି ଓଡ଼ିଶାର ଦାଣ୍ଡକୁ ବାହାରିଥିଲେ। ଓଡ଼ିଶାର ସାହିତ୍ୟ ଦାଣ୍ଡକୁ ବି ବାହାରି

ଥିଲେ । ସେ ମଣିଷକୁ ଭଗବାନଙ୍କର ପୁତ୍ର ବୋଲି ଘୋଷଣା କରିଥିଲେ ।

ରାଜା, ମହାଜନ ଓ ତତ୍ତୁଲ୍ୟ ପରାକ୍ରମୀ ଯାବତୀୟ ବିଶିଷ୍ଟ ବର୍ଗଙ୍କଠାରୁ ଭଗବାନଙ୍କୁ ଆହୁରି ଅଧିକ ବଡ଼ ବୋଲି ଘୋଷଣା କରିଥିଲେ । ସେତେବେଳର ନାନା ଭୟ ଭିତରେ ଥିବା ମଣିଷ ଲାଗି ଅଭୟ ବହନ କରି ଆଣିଥିଲେ। ତାଙ୍କରି ଭାଷାରେ,

"ରାଜାର ପରଜା ନୋହୁ ସିନା ଆମ୍ଭେ ନୋହୁ ସାହୁର ଖାତକ,
ଯହିଁ ଗୁରୁ ନେବେ ତହିଁ ଯାଉ ଆମ୍ଭେ କେ ଅବା କରୁ ଅଟକ" ।

ଭଗବତ୍ ଭକ୍ତି ଯେଉଁ ଶିଖର ସ୍ତରକୁ ଉଠିଲେ, ମଣିଷ ଭୟଶୂନ୍ୟ ଭାଷାରେ ଆପଣାକୁ ଅଭିବ୍ୟକ୍ତ କରିବାକୁ ସମର୍ଥ ହୁଏ, ଭୀମ ଭୋଇ ସେହିପରି ଏକ ଶିଖର ସ୍ତରରେ ରହି ଏହି ପଦଟିକୁ ଲେଖିଛନ୍ତି ।

ସ୍ତୁତି ଚିନ୍ତାମଣିର ଗୋଟିଏ ପଦରେ ଭୀମ ଭୋଇ କହିଛନ୍ତି -

*"ସତ୍ୟରେ ମରିବି ସତ୍ୟରେ ତରିବି ଏହି ଆଜ୍ଞା ମୋତେ ହେଉ" ।*

ଯୋରନ୍ଦାଠାରେ ମହିମା ଧର୍ମର ସର୍ବପ୍ରଧାନ କେନ୍ଦ୍ର ରହିଛି । ସେହି ଯୋରନ୍ଦାଠାରେ ହିଁ ମହିମା ଗୋସାଇଁ ଅଖଣ୍ଡ ଧୂନିର ସ୍ଥାପନା କରିଥିଲେ । ସେହି ଧୂନି ବର୍ତ୍ତମାନ ମଧ୍ୟ ଜଳୁଛି । ଏକ ନୂତନ ଯୁଗ ଓ ନୂତନ ଆଶାର ଅଗ୍ନିକୁ ଲୋକ ମନରେ ଜାଗୃତ କରି ରଖିବାର ସନ୍ତକ ହୋଇ ରହିଛି ।

ଖଲିଆ ପାଲିରେ ଶୂନ୍ୟମନ୍ଦିର ମଧ୍ୟ ରହିଛି । ଭୀମ ଭୋଇଙ୍କର ଆସ୍ଥାନଟିରେ ଭୀମ ଭୋଇଙ୍କର ଅନୁଗାମୀମାନେ ରହିଛନ୍ତି । ସେଠାରେ ଭୀମ ଭୋଇଙ୍କର ପାଦୁକା ରହିଛି, ସମାଧି ମନ୍ଦିର ମଧ୍ୟ ରହିଛି । ଆପଣାର ପଦଗୁଡ଼ିକୁ ଡାକି ଦେଉଥିବା ସମୟରେ ଯେଉଁ ଦୁଇଜଣ ସେଗୁଡ଼ିକୁ ଲିପିବଦ୍ଧ କରି ରଖୁଥିଲେ, ସେମାନଙ୍କ ଲାଗି ମଧ୍ୟ ସମାଧି ମନ୍ଦିର ତିଆରି ହୋଇଛି । ଭୀମ ଭୋଇ ବଞ୍ଚିଥିବା ସମୟରେ ମଧ୍ୟ ଖଲିଆ ପାଲି ପୀଠରେ ମହିଳାମାନେ ରହୁଥିଲେ । ସେମାନେ ଭୀମ ଭୋଇଙ୍କର ଅନୁଗତା ଥିଲେ । ସେହି ପରଂପରାଟି ଏବେ ମଧ୍ୟ ରହିଛି ।

ଯୋରନ୍ଦା ପୀଠରେ ନାରୀମାନଙ୍କ ଲାଗି କୌଣସି ବ୍ୟବସ୍ଥା ନାହିଁ । ଯୋରନ୍ଦାର ମହିମା ପନ୍ଥୀମାନେ ନାନା ସ୍ଥାନରେ ଯେଉଁ ଟୁଙ୍ଗୀ ସବୁ ସ୍ଥାପନ କରିଛନ୍ତି, ସେହି ଟୁଙ୍ଗୀର ଗୃହୀ ଭକ୍ତମାନଙ୍କ ଭିତରେ ନାରୀମାନେ ବି ଅନ୍ତର୍ଭୁକ୍ତ ହୋଇ ରହିଛନ୍ତି। ଏମାନେ

ବାର୍ଷିକ ମାଘ ପୂର୍ଣ୍ଣମୀ ମେଳାକୁ ବହୁ ସଂଖ୍ୟାରେ ଯୋରନ୍ଦାକୁ ଆସନ୍ତି । ଖଲିଆ ପାଲିରେ ମଧ୍ୟ ମାଘ ପୂର୍ଣ୍ଣମୀର ସ୍ମରଣ ଉତ୍ସବଟି ବହୁ ଭକ୍ତଙ୍କର ସମାଗମ ମଧ୍ୟରେ ପାଳିତ ହୁଏ । ମାତ୍ର ଖଲିଆ ପାଲିରେ କୌଣସି ଶୂନ୍ୟମନ୍ଦିର ନାହିଁ। ମାଘ ପୂର୍ଣ୍ଣମୀ ଦିନ ଖଲିଆ ପାଲିର ସକଳ ଉତ୍ସବାନୁଷ୍ଠାନ ଭୀମ ଭୋଇଙ୍କର ସମାଧି ମନ୍ଦିର ଭିତରେ ହିଁ ହୋଇଥାଏ। ଭୀମ ଭୋଇ ସଶରୀରେ ଥିଲାବେଳେ ଭକ୍ତମାନେ ତାଙ୍କୁ ଓ ତାଙ୍କର ପ୍ରଥମା ଅନୁଗତା ଅନ୍ନପୂର୍ଣ୍ଣାଙ୍କୁ ବେଦୀ ଉପରେ ବସାଇ ଫୁଲ, ଚନ୍ଦନ ଓ ଆଳତି ଦ୍ୱାରା ପୂଜା କରୁଥିଲେ। ଏବେ ସେମାନଙ୍କର ପାଦୁକାଗୁଡ଼ିକୁ ପୂଜା କରାଯାଉଛି ।

ମହିମା ଧର୍ମରେ ଭଜନ କହିଲେ , ପ୍ରଧାନତଃ ଭୀମ ଭୋଇଙ୍କର ଭଜନଗୁଡ଼ିକୁ ହିଁ ବୁଝାଏ । ଏହି ଭଜନ ଗୁଡ଼ିକୁ ଯୋରନ୍ଦା ଓ ଖଲିଆ ପାଲି ଉଭୟ ପୀଠରେ ବୋଲାଯାଏ। କିନ୍ତୁ ଦୁଃଖର କଥା, ଯୋରନ୍ଦା ଓ ଖଲିଆ ପାଲି ମଧ୍ୟରେ ସେହି କାଳରୁ କୌଣସି ଅନ୍ତରଙ୍ଗ ସମ୍ପର୍କର ରକ୍ଷା ହୋଇ ପାରିନାହିଁ । ପରସ୍ପର ମଧ୍ୟରେ କୌଣସି ସୁସଂପର୍କ କିମ୍ବା ଗମନା ଗମନ ମଧ୍ୟ ନାହିଁ। ଯୋରନ୍ଦାର ସନ୍ନ୍ୟାସୀମାନେ ଖଲିଆ ପାଲିକୁ ସେମାନଙ୍କ ମାର୍ଗର ଏକ ପୀଠ ବୋଲି ସ୍ୱୀକାର କରନ୍ତି ନାହିଁ । ପ୍ରତ୍ୟକ୍ଷ ଶତ୍ରୁତା କିମ୍ବା ଅସୂୟା ପ୍ରକାଶ ପାଉ ନଥିଲେ ମଧ୍ୟ ଦୁଇ ପୀଠର ଅନୁଗାମୀମାନଙ୍କ ମଧ୍ୟରେ ପାରସ୍ପରିକ ଏକ ଉଦାସୀନତା ଭାବ ରହିଥିବାର ପରିଲକ୍ଷିତ ହୋଇଥାଏ । ଦୁହେଁ ମହିମାଙ୍କ କଥା କୁହନ୍ତି, ଅଲେଖଙ୍କର ଭଜନ ଗାନ କରନ୍ତି, ତଥାପି ପରସ୍ପରକୁ ସେହି କଳ୍ପନା ଗୁଡ଼ିକ ମଧ୍ୟରୁ ସତେ ଅବା ବହିଷ୍କୃତ କରି ରଖି ଥାଆନ୍ତି। ମହିମା ଧର୍ମର ଇତିହାସ ଦୃଷ୍ଟିରୁ ଏହି ପ୍ରସଙ୍ଗଟି ବିଷୟରେ ଅଧିକ ଅଧ୍ୟୟନ ଓ ଅଧିକ ଆଲୋକପାତ ହୋଇ ପାରିବା ଉଚିତ ।

ଏହି ପ୍ରସଙ୍ଗଟିକୁ ନାନା କାରଣରୁ ସଂପୃକ୍ତ ଭକ୍ତମାନେ ଗୋପନ କରି ରଖିଛନ୍ତି। ମହିମା ଧର୍ମର ଯାବତୀୟ ଆହ୍ୱାନ ଓ ଉପାଦାନ ବସ୍ତୁତଃ ଐକ୍ୟ ବିଧାନକାରୀ ହୋଇଥିଲେ ମଧ୍ୟ ସେହି ଧର୍ମର ମୂଳଘରଟି ଯେ କାହିଁକି ଦୁଇ ଭାଗରେ ବିଭକ୍ତ ହୋଇ ଦୁଇଟି ଜାଗାରେ ରହିଛି, ସେହି ବିଷୟରେ ଅନୁସନ୍ଧାନ ହେବା ଉଚିତ ।

(ଏହି ପ୍ରବନ୍ଧ ପାଇଁ ପ୍ରଫେସର ଚିତ୍ତରଂଜନ ଦାସଙ୍କ
ନିକଟରେ ଲେଖକ କୃତଜ୍ଞତା ଜଣାଉଛନ୍ତି)



# କପିଳାସର ତପୋବନ ପୀଠ

ଢେଙ୍କାନାଳର ପବିତ୍ର କପିଳାସ ପୀଠ ହେଉଛି, ମହିମା ଧର୍ମର ଏକ ଗୁରୁତ୍ୱପୂର୍ଣ୍ଣ ପୀଠ । ଏଠାରେ ମହିମା ଧର୍ମର ପ୍ରବର୍ତ୍ତକ ମହିମା ସ୍ୱାମୀ ଆତ୍ମଯୋଗ ସମାଧିରେ ନିବିଷ୍ଟ ହୋଇଥିଲେ । ଏହି ଜୀବନ୍ତ ସ୍ମୃତିକୁ ପୁନରୁଦ୍ଧାର କରିବା ପାଇଁ ୧୯୮୧ ମସିହା ପର୍ଯ୍ୟନ୍ତ କୌଣସି ଉଦ୍ୟମ କରାଯାଇ ନଥିଲା । ଏହି ପୀଠକୁ ଲୋକ ଲୋଚନକୁ ଆଣିବା ପାଇଁ 'ରଘୁନାଥ ବାବା' ବହୁ ଦିନରୁ ଚେଷ୍ଟା କରି ଆସୁଥିଲେ । ଗୃହୀ ଭକ୍ତମାନଙ୍କ ସାହାଯ୍ୟରେ କପିଳାସର ଘଞ୍ଚ ଅରଣ୍ୟ ମଧ୍ୟରେ ସେହି ପବିତ୍ର ସ୍ଥାନକୁ ଖୋଜି ବାହାର କରାଗଲା ।

ସେହି ବର୍ଷ ୧୯୮୧ ମସିହା ଠାରୁ ତପୋବନ ପୀଠରେ ପ୍ରତିବର୍ଷ କାର୍ତ୍ତିକ ଶୁକ୍ଳ ପକ୍ଷ ଦଶମୀ ତିଥିରେ ଏକ ରାଜ୍ୟ ସ୍ତରୀୟ ମହିମା ମେଳା ଅନୁଷ୍ଠିତ ହୋଇ ଆସୁଛି । ଏହି ମେଳାରେ ହଜାର ହଜାର ଭକ୍ତ ମିଳିତ ହୋଇ ପରିବେଶକୁ ମହିମାନ୍ୱିତ କରି ଆସୁଛନ୍ତି । ତପୋବନ ପୀଠର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତ୍ୟନ୍ତ ସୁନ୍ଦର । ସେଠାରେ ମଧ୍ୟ ମହିମା ଟୁଙ୍ଗୀ, ଅଖଣ୍ଡଜ୍ୟୋତି ମନ୍ଦିର ଓ ଯଜ୍ଞ ମଣ୍ଡପ ନିର୍ମାଣ କରାଯାଇଛି । କାଦୁଆ ମୌଜା ଠାରୁ ଚାରି କିଲୋ ମିଟର ଦୂରରେ ଅବସ୍ଥିତ ଏହି ପୀଠ ଏବେ ଏକ ସୁନ୍ଦର ରାସ୍ତା ଦ୍ୱାରା ସଂଯୋଜିତ ।

ଏହି ପୀଠ ବର୍ତ୍ତମାନ ଢେଙ୍କାନାଳର ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟଟନ ସ୍ଥଳୀର ମାନ୍ୟତା ଲାଭ କରିଛି ।



# ମହିମା ଧର୍ମର ଗୈରିକ ବସ୍ତ୍ର

ପ୍ରାଚୀନ କାଳରୁ ସନାତନ ଧର୍ମରେ ସାଧୁ-ସନ୍ଥ, ମୁନି-ଋଷିମାନେ "ଗୈରିକ ବସ୍ତ୍ର" ପରିଧାନକୁ ଗୁରୁତ୍ୱ ଦେଇ ଆସୁଛନ୍ତି । ମହିମା ଧର୍ମାବଲମ୍ବୀମାନେ ସ୍ୱଧର୍ମ କର୍ମର ସଂପାଦନ ନିମନ୍ତେ କଷାୟ୍ ଗୈରିକବସ୍ତ୍ର ପରିଧାନ କରି ଥାଆନ୍ତି । ଏହାକୁ କେତେକ ନୀତି ନିୟମରେ ଗେରୁ କରି ପବିତ୍ର ମନରେ ଗ୍ରହଣ କରିବାକୁ ହୋଇଥାଏ ।

ନିଷ୍କାମ ଭାବନା ହେଉଛି, ମହିମା ଧର୍ମର ଏକ ବିଶେଷ ସାଧନା । ଏଥିପାଇଁ ମହିମା ସ୍ୱାମୀ ଭକ୍ତମାନଙ୍କର ଆଚାର,ବିଚାର,ବ୍ୟବହାର, ଖାଦ୍ୟପେୟ ଓ ବସ୍ତ୍ର ପରିଧାନରେ ମଧ୍ୟ ଏହି ନିଷ୍କାମ ଭାବଧାରାକୁ ଯୋଡି ଦେଇଛନ୍ତି ।

ଗୀତାରେ ମଧ୍ୟ ସେହି ବସ୍ତ୍ର ସଂପର୍କରେ ଲେଖାଅଛି, ଶରୀର ହେଉଛି- ଆତ୍ମାର ଏକ ବସ୍ତ୍ର ପରି । ଆତ୍ମାର ଲାଳସା ଚରିତାର୍ଥ କରିବାରେ ଶରୀର ତାକୁ ସମସ୍ତ ପ୍ରକାର ସାହାଯ୍ୟ କରିଥାଏ । ଠିକ୍ ସେହିପରି ଆତ୍ମାକୁ ମୁକ୍ତି ପଥରେ ନେଇ

ଯିବାକୁ ମଧ୍ୟ ଏହି ଶରୀର ସାହାଯ୍ୟ କରିଥାଏ । ଶରୀର ବିନା ଆତ୍ମା କିଛି କାର୍ଯ୍ୟ କରି ପାରିବ ନାହିଁ ।

ଆମ ଶରୀରକୁ ଦୂଷିତ କରିବା ପାଇଁ ଅସଂଖ୍ୟ କାରକ ରହିଛନ୍ତି । ସେମାନଙ୍କ ଦାଉରୁ ରକ୍ଷା କରିବା ପାଇଁ ଆମ ଶରୀରକୁ ବସ୍ତ୍ର ଦ୍ୱାରା ଆବୃତ କରିଥାଉଁ ।

ମହିମା ଧର୍ମ ଦର୍ଶନରେ ତ୍ୟାଗକୁ ଏକ ମାପକାଠି ହିସାବରେ ଗ୍ରହଣ କରାଯାଇଛି । ସରଳ, ସହଜ ଏବଂ ଅତି କମ୍ ଖର୍ଚ୍ଚରେ ଜୀବନ ଧାରଣ କରିବା ପାଇଁ ମହିମା ଧର୍ମରେ ନିର୍ଦ୍ଦେଶ ଦିଆ ଯାଇଛି । ସ୍ୱଳ୍ପ ମୂଲ୍ୟ ବିଶିଷ୍ଟ ଗୈରିକ ବସ୍ତ୍ର ଭକ୍ତର ମନକୁ ସର୍ବଦା ନମ୍ର କରି ରଖିଥାଏ । ଏହି ମାୟା ସଂସାରରେ ମଣିଷ ହେଉଛି, ଏକ ଅସହାୟ ପ୍ରାଣୀ । ଅବୋଧ, ଅଜ୍ଞାନ ବାଳକ ସଦୃଶ । ବାଳକ ହେଉଛି, ନିଷ୍କପଟ ଏବଂ ନିଷ୍କାମର ପ୍ରତୀକ । ଜ୍ଞାନୀ,ମାନୀ, ଅହଂକାରୀ ଓ ଗର୍ବୀ ମଣିଷ କଦାପି ଶିଶୁ ସ୍ୱଭାବକୁ ଗ୍ରହଣ କରି ପାରିବ ନାହିଁ ।

ଶିଶୁ ସ୍ୱଭାବ ଜାତ କରିବା ଉଦ୍ଦେଶ୍ୟରେ ଭକ୍ତ ନିଜକୁ ପ୍ରଭୁଙ୍କ ନିକଟରେ ଦୀନ ହୀନ ଭାବରେ ସମର୍ପଣ କରିଥାଏ । ତେଣୁ କ୍ଷୁଦ୍ର ତଥା ଗୈରିକ ବସ୍ତ୍ର ପରିଧାନ ଆଦରିଛି । ଏହି ସମୟରେ ସୂର୍ଯ୍ୟ ଦେବ ଗୈରିକ ରଂଗରେ ରଂଜିତ ହୋଇ ଥାନ୍ତି । ସେହି ରଂଗ ଉଦୟ ଓ ଅସ୍ତର ପ୍ରତୀକ ଭାବରେ ଗ୍ରହଣ କରାଯାଇଛି ।

ସୂର୍ଯ୍ୟଙ୍କ ଉଦୟ ଓ ଅସ୍ତ ନିଷ୍କାମର ମହତ୍ତ୍ୱକୁ ପ୍ରକାଶ କରିଥାଏ ।ତେଣୁ ଯୁଗେ ଯୁଗେ ସାଧୁ ସନ୍ନ୍ୟାସୀମାନେ ଗୈରିକ ବସ୍ତ୍ରକୁ ଆପଣେଇ ନେଇଛନ୍ତି ।

ମହିମା ଧର୍ମରେ ସଂଧ୍ୟା ସକାଳେ ସପ୍ତବାର ଓ ପଞ୍ଚବାର ଦଣ୍ଡ ପ୍ରଣାମ -ଶରଣ କରାଯାଏ । ଦଣ୍ଡ ବୈଠକ ଫଳରେ ଶରୀର ଚର୍ଚ୍ଚା ହୁଏ । ଏଥିପାଇଁ ବାଲି, ଧୂଳି ଓ ମାଟିରେ ଲମ୍ବହୋଇ ଗଡିବାକୁ ହୁଏ । ଗୈରିକ ବସ୍ତ୍ର ପରିଧାନ କରିଥିବା ସାଧୁ ଓ ଭକ୍ତମାନେ ଦଣ୍ଡ ଶରଣ ପରେ ଝାଡି ଝୁଡି ହୋଇ ପଡିଲେ, ପୂର୍ବପରି ପରିଷ୍କାର ହୋଇଯାଆନ୍ତି । ଗୈରିକ ବସ୍ତ୍ର ବାଲି ଧୂଳିକୁ ସହଜରେ ଗ୍ରହଣ କରେ ନାହିଁ ।

ଗୈରିକ ବସ୍ତକୁ 'ବ୍ରହ୍ମବସ୍ତ'ବା 'ଅମ୍ଳାନ ବସ୍ତ' କୁହାଯାଏ । ଏଥିରେ ଲାଗିଥିବା ମଇଳା ଖୁବ ସହଜରେ ଛାଡିଯାଏ । ଏହି ବସ୍ତ ପରିଧାନ କରିବା ଫଳରେ ନିର୍ଦ୍ଦିଷ୍ଟ ଗୋଷ୍ଠୀ ବା ସମଧର୍ମୀମାନେ ସହଜରେ ପରସ୍ପରକୁ ଚିହ୍ନି ପାରନ୍ତି । ଫଳରେ ମହିମା ଧର୍ମୀମାନେ ଶରୀରକୁ ଅତ୍ୟାବଶ୍ୟକ କ୍ଷେତ୍ରରେ ଆବରଣ କରି ଥାଆନ୍ତି ।

ସୂର୍ଯ୍ୟାସ୍ତ ଓ ସୂର୍ଯୋଦୟ ଦର୍ଶନକୁ ପ୍ରତ୍ୟେକ ସାଧୁ-ସନ୍ଥ ଗୁରୁତ୍ୱ ଦେଇ ଥାଆନ୍ତି । ଏହି ସମୟରେ ସୂର୍ଯ୍ୟ ଦେବ ଗୈରିକ ରଂଗରେ ରଂଜିତ ହୋଇ ଥାଆନ୍ତି । ସେହି ରଂଗକୁ ଉଦୟ ଓ ଅସ୍ତର ପ୍ରତୀକ ଭାବରେ ଗ୍ରହଣ କରାଯାଇଛି ।





ଗାଦି ମନ୍ଦିରର ଦକ୍ଷିଣ ଦ୍ୱାର




# ମହିମା ଜିଜ୍ଞାସା ଶତକ

୧। ପୁରୀଠାରେ ଅର୍କ ଗୁମ୍ଫାରେ ମହିମା ସ୍ୱାମୀ ଆତ୍ମଯୋଗ ସମାଧିରେ ନିବିଷ୍ଟ ଥିଲେ ।

୨। ମହିମା ସ୍ୱାମୀ ଖଣ୍ଡଗିରି ସମୀପରେ ହଳଦୀ ପିଚୁ ନାମକ ତାନ୍ତ୍ରିକର ଗର୍ବ ଖଣ୍ଡନ କରିଥିଲେ ।

୩। ଭୀମ ଭୋଇ ୧୨ ବର୍ଷ ବୟସରୁ ଗାଇ ଚରାଉଥିଲେ ।

୪। ଆଠଗଡର ଖୁଣ୍ଟୁଣୀ ଗ୍ରାମରେ ପ୍ରଥମେ ଭୀମ ଭୋଇଙ୍କ ଭଜନ ଗାନ କରା ଯାଇଥିଲା ।

୫। ମହିମା ସ୍ୱାମୀ ପୁରୀର ମୁକ୍ତି ମଣ୍ଡପରେ ବ୍ରହ୍ମ ସଂପର୍କରେ ବକ୍ତବ୍ୟ ପ୍ରଦାନ କରିଥିଲେ ।

୬। ମହିମା ଧର୍ମରେ ଆଶ୍ରିତ ଗୃହସ୍ଥମାନେ ପ୍ରତି ଶୁକ୍ଳ ଚତୁର୍ଦ୍ଦଶୀ ପ୍ରାତଃ କାଳରେ ମହିମା ପ୍ରସାଦ ବାଲ୍ୟଲୀଳା କରନ୍ତି ।

୭। ଭୀମ ଭୋଇଙ୍କ ଲିଖିତ ସମସ୍ତ ପୋଥି ଖଲିଆ ପାଲି ଗାଦିରେ ସଂରକ୍ଷିତ ହୋଇ ରହିଛି ।

୮। ମାଳ ବିହାର ପୁର ଗ୍ରାମରେ ମହିମା ଧର୍ମ ପ୍ରଚାର ଦାୟିତ୍ୱ ନୃସିଂହ ବାବାଙ୍କ ଉପରେ ନ୍ୟସ୍ତ କରା ଯାଇଥିଲା ।

୯। ଭୀମ ଭୋଇଙ୍କ ଆଦିଅନ୍ତ ଗୀତାରେ ଜୀବ-ପରମ ମଧ୍ୟରେ କଥୋପ କଥନ ହୋଇଛି ।

୧୦। ମହିମା ଧର୍ମରେ ଭୀମ ଭୋଇଙ୍କୁ ରାଧା ଭାବେ ଗ୍ରହଣ କରାଯାଏ ।

୧୧। ଭୀମ ଭୋଇ ଚାରି ବର୍ଷ ବୟସରେ ମହିମାସ୍ୱାମୀଙ୍କୁ ଦେଖିଥିଲେ ବୋଲି କଥିତ ଅଛି ।

୧୨। ଭୀମ ଭୋଇ ଏକା ରାଗରେ ଦୁଇ ଯୋଡା ଗୀତ ବାନ୍ଧି ପାରୁଥିଲେ ।

୧୩। ମହିମା ଧର୍ମର ଅନ୍ତିମ ଲକ୍ଷ୍ୟ ହେଉଛି, "ବ୍ରହ୍ମ ପ୍ରାପ୍ତି" ।

୧୪। ମହିମା ଧର୍ମ ଜାତି-ଅଜାତି ଭେଦକୁ ସ୍ୱୀକାର କରେ ନାହିଁ ।

୧୫। ମହିମା ଧର୍ମୀମାନେ କେଉଁଠି ଗୋଟିଏ ରାତିରୁ ଅଧିକ ରହନ୍ତି ନାହିଁ ।

୧୬। ମହିମା ସ୍ୱାମୀ ବ୍ରହ୍ମଙ୍କର ପରିଚୟ ଦେଇ କହିଥିଲେ, ବ୍ରହ୍ମ ହେଉଛନ୍ତି- "ନିର୍ଗୁଣ ଓ ସଚ୍ଚିଦାନନ୍ଦ" ।

୧୭। ଯୋରନ୍ଦାର ମାତା ମଠକୁ ସନ୍ନ୍ୟାସୀମାନେ ସ୍ୱୀକାର କରନ୍ତି ନାହିଁ ।

୧୮। ମହିମା ସ୍ୱାମୀ ୧୮୩୮ ମସିହାରେ କପିଳାସକୁ ଆସିଥିଲେ ।

୧୯। ମହିମା ସ୍ୱାମୀ "ବଲ୍କଲ ଭେକ ବାନା" ପିନ୍ଧୁଥିଲେ ।

୨୦। ମହିମା ସ୍ୱାମୀ ପ୍ରଥମେ ସନ୍ନ୍ୟାସୀ ରୂପେ "ଗୋବିନ୍ଦ ବାବା"ଙ୍କୁ ଦୀକ୍ଷା ପ୍ରଦାନ କରିଥିଲେ ।

୨୧। କପିଳାସ ପର୍ବତ ଉପରେ "ସଦାନନ୍ଦ ଶବର" ମହିମା ସ୍ୱାମୀଙ୍କୁ ଫଳ ମୂଳ ଦେଇ ବାର ବର୍ଷ କାଳ ସେବା କରିଥିଲେ ।

୨୨। ଢେଙ୍କାନାଳର ରାଜା "ଭାଗୀରଥି" ମହିମା ସ୍ୱାମୀଙ୍କୁ ୧୨ ବର୍ଷ ଦୁଗ୍ଧ ପାନ କରିବାକୁ ଦେଇଥିଲେ ।

୨୩। ମହିମା ସ୍ୱାମୀ ୧୮୬୨ ମସିହାରେ ପ୍ରଥମେ କାଶିପୁର ଗ୍ରାମରେ ଅନ୍ନ ଭିକ୍ଷାକରିଥିଲେ।

୨୪। ୧୮୬୪ ମସିହାରେ ଦାରୁଠେଙ୍ଗ ଟୁଙ୍ଗୀରେ ଗୋବିନ୍ଦ ବାବା ଦେହତ୍ୟାଗ କଲେ ।

୨୫। ୧୮୬୬ ମସିହାରେ ପ୍ରଥମେ ଖୁଣ୍ଟୁଣି ଓ ପରେ ବଉଳପୁରରେ ମହିମା ମହା ପ୍ରସାଦ ବାଲ୍ୟଲୀଳା ବ୍ୟବସ୍ଥା ହୋଇଥିଲା ।

୨୬। ୧୮୭୬ ମସିହାରେ ମହିମା ସ୍ୱାମୀ ଯୋରନ୍ଦା ଗାଦିରେ ଚିର ଆତ୍ମ ଯୋଗ ସମାଧି ଗ୍ରହଣ କରିଥିଲେ ।

୨୭। ଗଞ୍ଜେଇ, ମଦ ଓ ଅଫିମ ଖାଇବା ମହିମା ଧର୍ମରେ ସଂପୂର୍ଣ୍ଣ ମନା ।

୨୮। ମହିମା ସ୍ୱାମୀ ଯୋରନ୍ଦାରେ ଅଖଣ୍ଡ ଧୂନି ମନ୍ଦିର ସ୍ଥାପନା କରିଥିଲେ ।

୨୯। ଖଲିଆ ପାଲିରେ ଭୀମ ଭୋଇଙ୍କ ସମାଧି ମନ୍ଦିର ରହିଛି ।

୩୦। ଭୀମ ଭୋଇଙ୍କ ସମାଧି ମନ୍ଦିର ନିକଟରେ ତାଙ୍କର ଅନୁଗତା ଅନ୍ନପୂର୍ଣ୍ଣା ଦେବୀଙ୍କର ପାଦୁକା ପୂଜା କରାଯାଏ ।

୩୧। କୌଣସି ସ୍ଥାନରେ ସ୍ଥାପିତ କରା ଯାଇଥିବା ଧୂନି ଗୋଟିଏ ରାତିରୁ ଅଧିକ ସମୟ ରଖାଯାଏ ନାହିଁ ।

୩୨। ମହିମା ଧର୍ମରେ କୁହାଯାଏ- ଜାତି ଖୋଜିଲେ ମୁକ୍ତି ନାହିଁ, ମୁକ୍ତି ଖୋଜିଲେ ଜାତି ନାହିଁ ।

୩୩। ମହିମା ଟୁଙ୍ଗୀରେ ନାରୀ-ପୁରୁଷ ମୂର୍ତ୍ତି ବା ରୂପରେଖ ରଖାଯାଏ ନାହିଁ ।

୩୪। ମହିମା ଧର୍ମରେ ଭବିଷ୍ୟ ମାଳିକା ପାଠକୁ ବାରଣ କରା ଯାଇଛି ।

୩୫। ମହିମା ଧର୍ମରେ ହୋମ, ଯଜ୍ଞ, ଶ୍ରାଦ୍ଧ, ପିଣ୍ଡଦାନ, ବ୍ରତ, ଉପବାସ, ଭୂତ-ପ୍ରେତ ପୂଜା ଓ ତୀର୍ଥାଟନକୁ ତ୍ୟାଗ କରିବାକୁ ହୁଏ ।

୩୬। ମହିମା ଧର୍ମରେ ଦେବଦେବୀ ଆରାଧନା, ମନ୍ତ୍ର-ତନ୍ତ୍ରକୁ ସ୍ୱୀକାର କରାଯାଏ ନାହିଁ ।

୩୭। ମହିମା ଧର୍ମରେ ଗୋମୟ ଓ ଗୋମୂତ୍ରକୁ ପବିତ୍ର ପଦାର୍ଥ ଭାବେ ଗ୍ରହଣ କରାଯାଏ । ସ୍ନାନ, ପାନ ଓ ଶୂଚି କାମରେ ଏହା ଲାଗେ ।

୩୮। ମହିମା ଧର୍ମରେ ପ୍ରଣାମକୁ "ଶରଣ" କୁହାଯାଏ ।

୩୯। ମହିମା ଧର୍ମରେ ରାତ୍ର ଭୋଜନ ନିଷେଧ ।

୪୦। ମହିମା ଧର୍ମୀମାନେ କାହାରି ଉଚ୍ଛିଷ୍ଟ ଖାଇବେ ନାହିଁ କିମ୍ବା କାହାକୁ ଉଚ୍ଛିଷ୍ଟ ଖାଇବାକୁ ଦେବେ ନାହିଁ । ଖୋଲା ଆକାଶ ତଳେ ସମସ୍ତେ ମିଶି ଭିକ୍ଷା ବା ଭୋଜନ କରିବେ ।

୪୧। ଗୋ, ମହିଁଷି ବ୍ୟତୀତ ନିରୀହ ପଶୁ-ପକ୍ଷୀମାନଙ୍କୁ ବନ୍ଧନ କରି ରଖିବାକୁ ମହିମା ଧର୍ମରେ ବାରଣ କରା ଯାଇଛି ।

୪୨। ମହିମା ଧର୍ମରେ ଦୁଇ ପ୍ରକାର ସନ୍ନ୍ୟାସୀ ଥାଆନ୍ତି, ଯଥା-ବଳ୍କଳ ଧାରୀ ଓ କୌପୀନ ଧାରୀ ସନ୍ନ୍ୟାସୀ ।

୪୩। ନେପାଳ ଦେଶରେ ଥିବା ମହିମା ଟୁଙ୍ଗୀକୁ କୁଟି କହନ୍ତି ।

୪୪। ମହିମା ଧର୍ମରେ ଗିନି ଓ ଖଞ୍ଜଣିକୁ ବାଦ୍ୟ ହିସାବରେ ଗ୍ରହଣ କରା ଯାଇଛି ।

୪୫। ଖାଣ୍ଟି ଗୁଆ ଘିଅରେ ଛଣା ଯାଇଥିବା ବୁନ୍ଦି ଦାନାକୁ ଗୁଡରେ ପାଗ କରାଯାଇ

ଅଦ୍ମଣିଆ ତିଆରି କରାଯାଏ । ତାକୁ ଶୂନ୍ୟକୁ ଟେକି ପ୍ରସାଦ ହିସାବରେ ଗ୍ରହଣ କରାଯାଏ ।

୪୬। ଅହିଂସା,ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ- ଏହି ପଞ୍ଚ ସାଧନାକୁ ମହିମା ଧର୍ମରେ "ଯମ" କୁହାଯାଏ ।

୪୭। ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନ- ଏହି ପାଞ୍ଚଟି ସାଧନାକୁ ମହିମା ଧର୍ମରେ "ନିୟମ" କୁହାଯାଏ ।

୪୯। ମହିମା ଧର୍ମରେ ଅନ୍ୟ ସମସ୍ତ ଧର୍ମ ପରି ସତ୍ୟକୁ ସର୍ବୋଚ୍ଚ ସ୍ଥାନ ଦିଆଯାଏ ।

୫୦। କେବଳ ଦେହ ରକ୍ଷା ପାଇଁ ଯେତିକି ଦରକାର, ସେତିକି ଭୋଗ୍ୟବସ୍ତୁ ଗ୍ରହଣ କରିବାକୁ "ଅପରିଗ୍ରହ" କୁହାଯାଏ । ମହିମା ଧର୍ମରେ ଅପରିଗ୍ରହକୁ ପ୍ରାଥମିକତା ଦିଆଯାଏ ।

୫୧। ମହିମା ସ୍ୱାମୀଙ୍କ ଆଜ୍ଞାରେ ସାଧୁ ବାବାମାନେ ନିଜ ନିଜର ଜନ୍ମର ଇତିବୃତ୍ତ ପ୍ରକାଶ କରନ୍ତି ନାହିଁ ।

୫୨। ମହିମା ଧର୍ମୀ ସନ୍ନ୍ୟାସୀମାନେ ଅତିଥି ଭାବରେ ଏକ ଗ୍ରାମରେ ଏକରାତ୍ର ବାସ କରନ୍ତି ।

୫୩। ସନ୍ନ୍ୟାସୀମାନେ ସର୍ବଦା ବିମୁକ୍ତ ମାର୍ଗ ହୁଅନ୍ତି । ଅର୍ଥାତ ସେମାନେ ଘର ଦ୍ୱାର ନକରି ବିଚରଣ କରି ଚାଲିଥିବେ ।

୫୪। ମହିମା ଧର୍ମର ବ୍ରହ୍ମ ଦୀକ୍ଷାରେ ଯେଉଁମାନେ ଦୀକ୍ଷିତ ହୁଅନ୍ତି, ସେମାନଙ୍କୁ

"ବର୍ଣ୍ଣଶ୍ରେଷ୍ଠ" କୁହାଯାଏ । ସେମାନେ ହିଁ ଧନ୍ୟ ପୁରୁଷ ଅଟନ୍ତି ।

୫୫। ମହିମା ଧର୍ମରେ ବ୍ରହ୍ମୋପାସନାର ଦ୍ୱିବିଧ ପନ୍ଥା ସ୍ଥାପନ କରା ଯାଇଛି ।ଯଥା- "ଗାର୍ହସ୍ଥ୍ୟ ଓ ସନ୍ନ୍ୟାସ" । କାରଣ କଳି ଯୁଗରେ ବ୍ରହ୍ମଚର୍ଯ୍ୟ ଆଶ୍ରମ କିମ୍ବା ବାନ ପ୍ରସ୍ଥାଶ୍ରମର ବ୍ୟବସ୍ଥା ନାହିଁ ।

୫୬। ମହିମା ଧର୍ମରେ ଶରଣ ଦର୍ଶନ ସମୟରେ ଜଗତ ଭଗତ ଏବଂ ଅଶେଷ ବ୍ରହ୍ମାଣ୍ଡର ମଙ୍ଗଳ ନିମିତ୍ତ ସାଧୁ ଭକ୍ତଗଣ ପ୍ରାର୍ଥନା କରନ୍ତି ।

୫୭। ମହିମା ସନ୍ନ୍ୟାସୀ ଭିକ୍ଷା ଦ୍ରବ୍ୟକୁ ପରଦିନ ପାଇଁ ସଂଗ୍ରହ କରି ରଖି ପାରନ୍ତି ନାହିଁ ।

୫୮। ମହିମା ଧର୍ମରେ ସନ୍ନ୍ୟାସୀ ସ୍ୱୟଂ ଅନ୍ନ ପାକ କରିବେ ନାହିଁ । କୌଣସି ଗୃହ ମଧ୍ୟରେ ବସି ଭିକ୍ଷା କରିବେ ନାହିଁ ।

୫୯। ଧାତୁ ନିର୍ମିତ ବାସନରେ ସନ୍ନ୍ୟାସୀମାନଙ୍କୁ ଭିକ୍ଷା କରିବା ମନା ।

୬୦। ମହିମା ଧର୍ମରେ ସନ୍ନ୍ୟାସୀମାନେ ପତ୍ର ବା ମାଟି ପାତ୍ରରେ ଭିକ୍ଷା କରିଥାଅନ୍ତି ।

୬୧। ମହିମା ଧର୍ମରେ ସନ୍ନ୍ୟାସୀମାନେ ଭୂମିରେ ଶୟନ କରନ୍ତି ।

୬୨। ମହିମା ଧର୍ମରେ ସନ୍ନ୍ୟାସୀ ଏକାକୀ ଭ୍ରମଣ କରିବେ । ସମାନ ସ୍ୱଭାବର ସନ୍ନ୍ୟାସୀ ମିଳିଲେ, ତାଙ୍କ ସହିତ ଭ୍ରମଣ କରା ଯାଇପାରେ ।

୬୩। ମହିମା ଧର୍ମରେ କାଳ୍ପନିକ ଅସତ୍ ଶାସ୍ତ୍ର ପାଠ ନିଷେଧ ।

୭୪। ମହିମା ଧର୍ମୀମାନଙ୍କୁ ସ୍ୱର୍ଣ୍ଣ ଅଳଙ୍କାର ବା ବାହ୍ୟ ଆଡମ୍ବର ଭୂଷଣ ପରିଧାନ ବାରଣ କରା ଯାଇଛି ।

୭୫। କେବଳ ବ୍ରହ୍ମନିଷ୍ଠ ସନ୍ନ୍ୟାସୀମାନେ ହିଁ ଉପଦେଶ ପ୍ରଦାନ କରିବାକୁ ଅଧିକାର ପାଇଛନ୍ତି ।

୭୬। ଦୁଃଖ ଉପସ୍ଥିତ ହେଲେ, ସନ୍ତାପ ତ୍ୟାଗ କରି ପ୍ରଭୁଙ୍କୁ ପ୍ରାର୍ଥନା କରିବାକୁ ମହିମା ଧର୍ମରେ ନିର୍ଦ୍ଦେଶ ରହିଛି ।

୭୮। ନିଜ ନାମରେ ଜମି ବାଡ଼ି କିଣିବା ସନ୍ନ୍ୟାସୀମାନଙ୍କୁ ମନା ।

୭୯। ଆତ୍ମ ପ୍ରତିଷ୍ଠା ପାଇଁ ବ୍ୟକ୍ତିଗତ ଆଶ୍ରମ ପ୍ରତିଷ୍ଠା କରିବା ମନା ।

୮୦। ଜଗତର ନରନାରୀମାନଙ୍କୁ ସନ୍ନ୍ୟାସୀମାନେ "ବାପା ଓ ମାଆ" ସଂବୋଧନ କରନ୍ତି।

୮୧। କୌଣସି ପରିସ୍ଥିତିରେ ବ୍ରହ୍ମନିଷ୍ଠ ସନ୍ନ୍ୟାସୀମାନଙ୍କୁ ଅବମାନନା କରିବା ଅନୁଚିତ।

୮୨। ମହିମାଙ୍କ ଭାବରେ ନିମଗ୍ନ ରହିବାକୁ ହେଲେ , ସତ୍ୟ ତତ୍ତ୍ୱକୁ ଦୃଢ ବ୍ରତ ରୂପରେ ଧାରଣ କରିବାକୁ ପଡ଼େ ।

୮୩। ଭକ୍ତ ଭୀମ ଭୋଇ କହିଛନ୍ତି-ମହିମାଙ୍କ ଉପାସନା ଅତ୍ୟନ୍ତ ସହଜ ଓ ସରଳ । କେବଳ ଦୃଢ଼ ବ୍ରତ ଗ୍ରହଣ କରିବାକୁ ହେବ ।

୮୪। ମହିମା ଧର୍ମ ସମାଜରେ ଶରଣ ମାନ୍ୟରେ ବ୍ୟବହାରିକ ଭାବରେ କେବଳ ଶରଣ, ଆଜ୍ଞା, ମାନ୍ୟ ଶବ୍ଦ ଭିନ୍ନ ପ୍ରଣାମ, ନମସ୍କାର, ଦଣ୍ଡବତ ପ୍ରଭୃତି ଶବ୍ଦ ବ୍ୟବହାର କରା ଯାଏ ନାହିଁ ।

୮୫। ଭକ୍ତି ସହକାରେ ସପ୍ତ-ପଞ୍ଚବାର ସାଷ୍ଟାଙ୍ଗ ପ୍ରଣାମକୁ ମହିମା ଧର୍ମରେ ଗୁରୁତ୍ବ ଦିଆଯାଏ ।

୮୬। ପଦ ଦ୍ଵୟ, କର ଦ୍ଵୟ, ହସ୍ତ ଦ୍ଵୟ ,ବକ୍ଷ, ମନ, ମସ୍ତକ, ବାକ୍ୟ ଓ ନେତ୍ରପାତ- ଏହି ଆଠଟି ଅଙ୍ଗ ଦ୍ଵାରା ପ୍ରଣାମକୁ ଅଷ୍ଟାଙ୍ଗ ପ୍ରଣାମ କୁହାଯାଏ ।

୮୭। ମହିମା ଧର୍ମରେ ପରଂବ୍ରହ୍ମଙ୍କୁ ସ୍ତୁତି କରିବାକୁ ହେଲେ, ଉଚ୍ଚ ସ୍ଵରରେ ବାରମ୍ବାର "ଅଲେଖ ମହିମା" ଉଚ୍ଚାରଣ କରିବାକୁ ହୁଏ ।

୮୮। ବ୍ରାହ୍ମଣ, ରଜକ, ନାପିତ, ଦ୍ଵିଜ, ଗଣକ, ଗଣିକା, ରାଜା ଓ ବୈଷ୍ଣବ ଗୃହରୁ ସନ୍ନ୍ୟାସୀ ଓ ଭକ୍ତମାନେ ଭିକ୍ଷା ଗ୍ରହଣ କରନ୍ତି ନାହିଁ ।

୮୯। ମହିମା ସ୍ଵାମୀ ଆଜ୍ଞା କରିଛନ୍ତି-ବ୍ରହ୍ମ ଜ୍ଞାନଶୂନ୍ୟ , ବୈରାଗ ଶୂନ୍ୟ ବ୍ୟକ୍ତି ସଂସାର ତ୍ୟାଗ କରେ ବା ଇଚ୍ଛା ମତେ ସନ୍ନ୍ୟାସ ଧାରଣ କରେ, ସେ ପର କାଳରେ ପଶୁ ହୋଇ ଜନ୍ମ ଗ୍ରହଣ କରିବ ।

୯୦। ଆଳସ୍ୟର ବଶ ହୋଇ ପେଟ ପୋଷିବା ଉଦ୍ଦେଶ୍ୟରେ ଯେଉଁମାନେ ସଂସାର ତ୍ୟାଗ କରନ୍ତି, ସେମାନେ ମଧ୍ୟ ଦାତାର ଋଣ ପରିଶୋଧ କରିବା ପାଇଁ ପର କାଳରେ ପଶୁ ହୋଇ ଜନ୍ମ ଗ୍ରହଣ କରିବେ ।

୯୧। ପରାନ୍ନ ଭୋଜନର ଦୋଷ ନଜାଣି ଯିଏ ପର ପାକରେ ଭୋଜନ କରେ, ସେ ଦାତାର ଋଣ ପରିଶୋଧ କରିବା ପାଇଁ ପର କାଳରେ ପଶୁ ହୋଇ ଜନ୍ମ ଗ୍ରହଣ କରିବ ।

୯୨। ମହିମା ଧର୍ମରେ ଥରେ ସନ୍ନ୍ୟାସ ବ୍ରତ ଗ୍ରହଣ କରି ପୁଣି ଗୃହୀ ହେବା ଅନୁଚିତ ।

୯୩। ମହିମା ଧର୍ମରେ ଭେଦଭାବ ଦୂର କରି ଏକାତ୍ମ ହୋଇ ଚଳିବା ପାଇଁ ନିର୍ଦ୍ଦେଶ ରହିଛି ।

୯୪। ସ୍ୱାମୀ ବିବେକାନନ୍ଦଙ୍କ ଦ୍ୱାରା ସ୍ଥିରୀକୃତ ନିୟମ ଗୁଡ଼ିକ ମହିମା ଧର୍ମର ଅବଧୂତ ସନ୍ନ୍ୟାସୀ ସାଧୁମାନଙ୍କର ପାଳନୀୟ ।

୯୫। ବ୍ରହ୍ମନିଷ୍ଠ ସନ୍ନ୍ୟାସୀ ଦେହ ତ୍ୟାଗ କଲେ, ସେମାନଙ୍କୁ ଭୂଗର୍ଭରେ ସମାଧି ଦିଆଯାଏ ।

୯୬। ମହିମା ଧର୍ମରେ କୌଣସି ଅନ୍ତ୍ୟେଷ୍ଟିକ୍ରିୟା କରାଯାଏ ନାହିଁ ।

୯୭। ପ୍ରବୁଦ୍ଧ ଗୁରୁ ମହିମା ସ୍ୱାମୀ କୌଣସି ଗ୍ରନ୍ଥ ରଚନା କରି ନାହାନ୍ତି ।

୯୮। ବର୍ତ୍ତମାନର ଶୂନ୍ୟ ମନ୍ଦିର ଥିବା ସ୍ଥାନରେ ପ୍ରବୁଦ୍ଧ ଗୁରୁ ମହିମା ସ୍ୱାମୀ ଇହଲୀଳା ସମ୍ବରଣ ପୂର୍ବକ ମହା ଶୂନ୍ୟକୁ ବିଜେ କରିଥିଲେ ।

୯୯। ଯୋରନ୍ଦାରେ ଥିବା ସନ୍ନ୍ୟାସୀମାନେ ଦୁଇଟି ସଂଘ ଦ୍ୱାରା ପରିଚାଳିତ । ଯଥା: "ସତ୍ୟ ମହିମା ଧର୍ମ ସମାଜ" ଓ "କୌପୀନଧାରୀ ମହିମା ସମାଜ" ।

୧୦୦। ମହିମା ସ୍ୱାମୀ "ସ୍ୱୟଂ ସମ୍ଭୂତ" ବୋଲି ସନ୍ନ୍ୟାସୀମାନେ ବିଶ୍ୱାସ କରନ୍ତି ।






# ମହିମା ଗାଦିର ମୁଖ୍ୟ ଆକର୍ଷଣ

## ଗାଦି ମନ୍ଦିର :

ମହିମା ସ୍ୱାମୀ ଶୂନ୍ୟ ମନ୍ଦିର ନିକଟରେ ଇହଲୀଳା ସମ୍ବରଣ କରିଥିଲେ । ତାଙ୍କର ଦିବ୍ୟ ଶରୀରକୁ ସିଦ୍ଧ ସାଧୁମାନେ ପୂର୍ବରୁ ପାଇଥିବା ନିର୍ଦ୍ଦେଶ ଅନୁସାରେ ଯୋରନ୍ଦା ଗ୍ରାମର ଅଗ୍ନି କୋଣରେ ସମାଧି ଦେଇଥିଲେ । କାଳକ୍ରମେ ଏହି ସମାଧି ପୀଠଟି ମହିମାଗାଦି ଭାବରେ ପରିଚିତ ହେଲା । ମହିମା ଧର୍ମ ପାଇଁ ଏହା ସମଗ୍ର ବିଶ୍ୱରେ "ଗୁରୁ ପୀଠ" ଭାବରେ ପ୍ରତିଷ୍ଠା ଲାଭ କଲା ।

ସଂପ୍ରତି ଏଠାରେ ୫୨ ହାତ ଉଚ୍ଚର ଏକ ସୁରମ୍ୟ ମନ୍ଦିର ଗଢ଼ି ଉଠିଛି । ତାକୁ ଗାଦି ମନ୍ଦିର ଭାବରେ ସମସ୍ତେ ଜାଣନ୍ତି । ଏହି ମହିମାଗାଦି ଯୋରନ୍ଦା ଅଂଚଳର ସର୍ବୋଚ୍ଚ ମନ୍ଦିର ଅଟେ । ଭକ୍ତ ଓ ଦର୍ଶକମାନେ ଏହି ମନ୍ଦିରକୁ ଦର୍ଶନ କରିବାକୁ ପ୍ରତ୍ୟହ ଆସି ଥାଆନ୍ତି । ଗାଦି ମନ୍ଦିରଟି ତିନୋଟି ବୃହତ୍ ବେଢ଼ାଦ୍ୱାରା ଆବୃତ ।

ପ୍ରଥମ ବେଢ଼ାରେ ଚାରୋଟି ମୁଖଶାଳା ରହିଛି । ଚାରି ଦିଗରେ ଥିବା ଚାରୋଟି ଯାକ ମୁଖଶାଳାର ଗଠନ ଶୈଳୀ ଭିନ୍ନ ଭିନ୍ନ । ଏହାର ତାତ୍ପର୍ଯ୍ୟ ସଂପର୍କରେ ଭୀମ ଭୋଇ ତାଙ୍କର ଭଜନ ମାଳାର ଅବକାଶ ପ୍ରସଂଗରେ ଅତି ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି । ଏଥିରୁ ଜଣାପଡ଼େ, ବିଭିନ୍ନ ଦେବଦେବୀ ଗୁରୁ ମହିମା ଗୋସାଇଁଙ୍କୁ

ଭେଟିବାକୁ ଏହି ମନ୍ଦିରକୁ ପ୍ରବେଶ କରି ଥାଆନ୍ତି ତେଣୁ ବିଭିନ୍ନ ଦେବ ଦେବୀଙ୍କ ପ୍ରତୀକ ଭାବେ ମୁଖଶାଳା ଗୁଡ଼ିକର ନିର୍ମାଣ କୌଶଳ ଭିନ୍ନ ଭିନ୍ନ କରା ଯାଇଛି ।

ଏହି ଗାଦି ମନ୍ଦିରକୁ ମୂର୍ତ୍ତିଏ ବାବା ହିଁ ପ୍ରବେଶ କରି ନୀତି ସେବା କରନ୍ତି । ଏଠାରେ ଦିନରେ ତିନି ଥର ନୀତି କାର୍ଯ୍ୟ ହୁଏ ।

ଦ୍ୱିତୀୟ ବେଢ଼ାରେ ସମସ୍ତ ଜନ ସାଧାରଣ ପ୍ରବେଶ କରି ଥାଆନ୍ତି । ଏହାର ଚାରୋଟି ମୁଖଶାଳାକୁ ପ୍ରବେଶ ଦ୍ୱାର ଭାବେ ବିବେଚନା କରାଯାଏ । ଏହି ବେଢ଼ା ଭିତରେ ପ୍ରଶସ୍ତ ସ୍ଥାନ ଥିବାରୁ ଦର୍ଶକ ଓ ଭକ୍ତମାନେ ମନ୍ଦିର ପରିକ୍ରମା କରିଥା'ନ୍ତି । ମାଘମେଳାରେ ଝାଡ଼ଦୀପରେ ଘୃତାହୁତି ଏହି ବେଢ଼ା ଭିତରେ ହିଁ ହୋଇଥାଏ । ଭକ୍ତ, ସାଧୁ ସନ୍ନ୍ୟାସୀ ତଥା ସଜ୍ଜନ ମାନଙ୍କ ଦ୍ୱାରା ଗାଦି ମନ୍ଦିର ତୃତୀୟ ବେଢ଼ାର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି । ତୃତୀୟ ବେଢ଼ା ମଧ୍ୟରେ ଅଖଣ୍ଡ ବତୀ ମନ୍ଦିର ଓ ଅନ୍ୟ ଏକ ଧୂନି ମନ୍ଦିରରେ ନୀତି କାର୍ଯ୍ୟ ଚାଲିଛି । ଏଠାରେ ମଧ୍ୟ ସାଧୁ ସନ୍ନ୍ୟାସୀମାନେ ଦର୍ଶନ-ଶରଣ ଭଜନ କୀର୍ତ୍ତନ ନିୟମିତ ଭାବରେ କରି ଚାଲିଛନ୍ତି ।


ଅଖଣ୍ଡ ଝାଡ଼ରେ ଘୃତାହୁତି

## ଧୂନି ମନ୍ଦିର :

ବିଶ୍ୱ ବ୍ରହ୍ମାଣ୍ଡର ମଙ୍ଗଳ କାମନା କରି ମହିମା ଧର୍ମର ପ୍ରତିଷ୍ଠାତା ପ୍ରବୁଦ୍ଧ ଗୁରୁ ମହିମା ସ୍ୱାମୀ ସ୍ୱହସ୍ତରେ ଏହି ଧୂନିକୁ ସ୍ଥାପନା କରିଥିଲେ । ୧୯୫୮ ମସିହାରେ ମହିମା ସମାଜର ସାଧୁ-ସନ୍ନ୍ୟାସୀ ଓ ଭକ୍ତମାନଙ୍କ ଦ୍ୱାରା ଏକ ସୁଦୃଶ୍ୟ ଧ୍ୱନି ମନ୍ଦିର ଗଢ଼ି ଦେଇଛନ୍ତି । ଏହା ଆଶ୍ରମ ମଣ୍ଡଳର ଦକ୍ଷିଣ ଦିଗରେ ନାଟିମା ବକାରକୁ ଲାଗି ରହିଛି । ଗାଦି ମନ୍ଦିର ରୀତି ଅନୁସାରେ ଧୂନି ମନ୍ଦିରରେ ମଧ୍ୟ ପ୍ରତିଦିନ ନୀତି, ସେବା ଚାଲିଥାଏ । ଧୂନି କୁଣ୍ଡରେ ଘୃତାହୁତି ଦିଆଯାଏ । ଏଥିରେ ନଡ଼ିଆ, ଫଳମୂଳ, ଅଗୁରୁ, ଚନ୍ଦନ, କର୍ପୂର ମଧ୍ୟ ଅର୍ପଣ କରାଯାଏ । ଧୂନିମନ୍ଦିର ନିର୍ମାଣ କାର୍ଯ୍ୟ ୧୯୫୨ରେ ଆରମ୍ଭ ହୋଇଥିଲା ଏବଂ ୧୯୫୮ ମସିହା ମାଘ ପୂର୍ଣ୍ଣିମା ପ୍ରାତଃ ବ୍ରାହ୍ମ ମୁହୂର୍ତ୍ତରେ ଏଠାରେ ଧୂନି ସ୍ଥାପିତ ହେଲା ।

## ଶୂନ୍ୟମନ୍ଦିର :-

ମହିମାଗାଦିର ଅନତି ଦୂର ଉତ୍ତର-ପଶ୍ଚିମ କୋଣରେ ଶୂନ୍ୟ ମନ୍ଦିର ଅବସ୍ଥିତ । ମହିମା ସ୍ୱାମୀ ଯେଉଁ ସ୍ଥାନରେ ଦେହତ୍ୟାଗ କରିଥିଲେ, ସେହି ସ୍ଥାନକୁ ଅତି ପବିତ୍ର ସ୍ଥାନ ଭାବରେ ଚିହ୍ନିତ କରିବା ଉଦ୍ଦେଶ୍ୟରେ ଭକ୍ତ ଓ ସିଦ୍ଧ ସାଧୁ ସନ୍ନ୍ୟାସୀମାନେ ଏକ ସୁନ୍ଦର ଶୂନ୍ୟ ମନ୍ଦିର ନିର୍ମାଣ କରିଛନ୍ତି । ଏଥିରେ କୌଣସି ଦେବଦେବୀ ମୂର୍ତ୍ତି କିମ୍ବା ସମାଧି ମନ୍ଦିର ନାହିଁ । କେବଳ ମହିମା ସ୍ୱାମୀଙ୍କ ସ୍ମୃତି ଉଦ୍ଦେଶ୍ୟରେ ମନ୍ଦିର ଭିତରେ ଗୋଟିଏ ଅଖଣ୍ଡ ଘୃତବତୀ ଚିର ଜାଗରିତ ହୋଇ ରହିଥାଏ ।

ତ୍ରିସଂଧ୍ୟାରେ ଏଠାରେ ନିୟମିତ ନୀତି କାର୍ଯ୍ୟ ଚାଲେ । କୌପୀନ ଧାରୀ ସାଧୁ ଓ ବୈରାଗୀମାନେ ସେବା କାର୍ଯ୍ୟରେ ସହଯୋଗ କରିଥା'ନ୍ତି ।

## ଏକୋଇଶି ହାତିଆ ଟୁଙ୍ଗୀ :-

ଏହି ଟୁଙ୍ଗୀଟି ଶୂନ୍ୟ ମନ୍ଦିର ନିକଟରେ ସ୍ଥାପନା କରାଯାଇଛି । ମହିମା ସ୍ୱାମୀ ବିଭିନ୍ନ ସମୟରେ ଦେଶ ଭ୍ରମଣରେ ଯାଇ ମହିମା ଧର୍ମର ପ୍ରଚାର ପ୍ରସାର କରୁଥିଲେ । ବିଭିନ୍ନ ସ୍ଥାନରେ ଆଶ୍ରମ ବା ଟୁଙ୍ଗୀ ମଧ୍ୟ ନିର୍ମାଣ କରି ଚାଲିଥିଲେ ।

ଯୋରନ୍ଦା ଗ୍ରାମରେ ନିର୍ମାଣ କରା ଯାଇଥିବା ଆଶ୍ରମ ବା ଟୁଙ୍ଗୀରେ ମହିମା ସ୍ୱାମୀ ଅଧିକ ସମୟ ରହୁଥିଲେ । ସେହି ଟୁଙ୍ଗୀର ଉଚ୍ଚତା ଥିଲା, ଏକୋଇଶି ହାତ । ମହିମା ସ୍ୱାମୀଙ୍କ ଦେହାନ୍ତ ପରେ ତାଂକ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ଭକ୍ତ ଓ ସାଧୁ ସନ୍ନ୍ୟାସୀମାନଙ୍କ ଦ୍ୱାରା ଏକ ସୁନ୍ଦର ପକ୍କା ଏକୋଇଶି ହାତିଆ ଟୁଙ୍ଗୀ ନିର୍ମାଣ କରାଯାଇଛି ।

## ମହିମା ସ୍ୱାମୀଙ୍କ ଦ୍ୱାରା ପ୍ରତିଷ୍ଠିତ ବୃହତ ଆଶ୍ରମ ମଣ୍ଡଳ :

ମହିମାଗାଦି ଅଂଚଳରେ ପ୍ରବେଶ କଲେ, ଦର୍ଶକ ଓ ଭକ୍ତମାନଙ୍କ ଦୃଷ୍ଟିରେ ପଡ଼େ ସରସ, ସୁନ୍ଦର କେତୋଟି ବୃହତ ପ୍ରବେଶ ଦ୍ୱାର । ଏହାକୁ ଦକ୍ଷିଣ ଦ୍ୱାର, ପୂର୍ବଦ୍ୱାର, ଉତ୍ତର ଦ୍ୱାର ଓ ପଶ୍ଚିମଦ୍ୱାର ହିସାବରେ ନାମିତ କରାଯାଇଛି । ଚାରିଦ୍ୱାର ବେଷ୍ଟିତ ଆଶ୍ରମ ମଣ୍ଡଳ ଭିତରେ ମହିମାଗାଦି ପରିଚାଳନା ନିମନ୍ତେ ନୀତି ମନ୍ଦିର, ଘଣ୍ଟା ଘର, ଭିକ୍ଷା ମଣ୍ଡପ, ଉପାସନା ପୀଠ, ସଭାମଣ୍ଡପ, ଅହ୍ଲଣିଆ ମଣ୍ଡପ, ମହିମା କାର୍ଯ୍ୟାଳୟ, ମହିମା ଶିଶୁ ବିକାଶ ଶିକ୍ଷାଶ୍ରମ, କାଗଜଘର, ଆଶ୍ରମ, ଚୌପାଢ଼ି, ଗ୍ରନ୍ଥକୋଷ, ଅତିଥି ଭବନ, ସଭା ଭବନ ଓ ଭିକ୍ଷା ଭଣ୍ଡାର ପ୍ରଭୃତି ରହିଛି । ଏହି ଭବନ ଗୁଡ଼ିକ ପଥର ଦ୍ୱାରା ନିର୍ମିତ ହୋଇଛି । ଏହାକୁ ଲହଡ଼ି କୋଠା ନାମରେ ନାମିତ କରାଯାଇଛି ।

ପ୍ରଥମ ସଭା ମଣ୍ଡପରେ ମହିମା ସ୍ୱାମୀଙ୍କର ଶିଷ୍ୟ ୬୪ ସିଦ୍ଧ ସନ୍ନ୍ୟାସୀ ବସି ଧର୍ମସଭା କରୁଥିଲେ ।

ଦ୍ୱିତୀୟ ସଭା ମଣ୍ଡପରେ ମହିମା ସମାଜ ଗୋଷ୍ଠୀ ଭୁକ୍ତ ସାଧୁ ସନ୍ନ୍ୟାସୀମାନେ ସେମାନଙ୍କର ଧର୍ମ ଆଲୋଚନା କରନ୍ତି ।

ଆଶ୍ରମ ମଣ୍ଡଳରେ ଥିବା ଲହଡ଼ି କୋଠାରେ ଭିକ୍ଷା ସାମଗ୍ରୀ, ଖାଦ୍ୟ-ଶସ୍ୟ ଓ ବିଭିନ୍ନ ଉପକରଣ ରଖାଯାଇଛି ।

ନୀତି ମନ୍ଦିରରେ ଗାଦି ଓ ବିଭିନ୍ନ ମନ୍ଦିରର ନୀତି ଉପକରଣ ଯଥା- ଡ଼ାଳ, ବାଲଟି, ଚାମର, ଅତରଦାନୀ, ରୂପାବାକ୍ସ ଓ ଦାତାମାନଙ୍କର ଦ୍ରବ୍ୟ, ପିତ୍ତଳ ନାଗ, ଛତ୍ର ଏବଂ ସୁନା ରୂପାରେ ନିର୍ମିତ ବିଭିନ୍ନ ମୂଲ୍ୟବାନ ପଦାର୍ଥ ସୁରକ୍ଷିତ କରି ରଖାଯାଇଛି । ଏହା ପ୍ରତି ବର୍ଷ ମାଘମେଳା ଅବସରରେ ଗାଦି ମନ୍ଦିର ସମ୍ମୁଖରେ ସର୍ବସାଧାରଣଙ୍କ ଦର୍ଶନ ଉଦ୍ଦେଶ୍ୟରେ ପ୍ରଦର୍ଶନ କରାଯାଏ ।



## ଘଣ୍ଟାଘର :

ମହିମା ଆଶ୍ରମର ଘଣ୍ଟାଘର ହେଉଛି, ଅନ୍ୟ ଏକ ଆକର୍ଷଣୀୟ ପୀଠ। ଘଣ୍ଟାଘର ମାଧ୍ୟମରେ ପ୍ରତ୍ୟେକ ସାଧୁ ସନ୍ନ୍ୟାସୀ ଏବଂ ବୈରାଗୀମାନଙ୍କୁ ଜାଗ୍ରତ କରାଇ ଦିଆଯାଏ । ପ୍ରତ୍ୟେକ ଘଣ୍ଟାରେ ଏଠାରେ ଥିବା ବୃହତ ଘଣ୍ଟାଦ୍ୱାରା ସମୟ ସୂଚିତ କରାଇ ଦିଆଯାଏ । ଏଥିପାଇଁ ସ୍ୱତନ୍ତ୍ର ଭାବେ ତିନିମୂର୍ତ୍ତି ସାଧୁ ନିଯୁକ୍ତି ପାଇଛନ୍ତି ।

ଆଶ୍ରମ ମଣ୍ଡଳ ତଥା ମହିମା ଗାଦିକୁ ସମସ୍ତ ପ୍ରକାର ପରିଚାଳନା କରିବା ପାଇଁ ଜଣେ ସାଧୁ ନିଯୁକ୍ତ ହୋଇଥାନ୍ତି । ମହିମା ଗାଦିର ସମସ୍ତ କାଗଜପତ୍ର ହିସାବ ରଖିବା ସଙ୍ଗେ ସଙ୍ଗେ ବିଭିନ୍ନ ସ୍ଥାନକୁ ପତ୍ରାଳାପ କରିଥା'ନ୍ତି। ଏହି କାର୍ଯ୍ୟାଳୟକୁ ମହିମା ପ୍ରଭୁଙ୍କ କାଗଜ ଘର ଭାବେ ନାମିତ କରା ଯାଇଛି ।

ଆଶ୍ରମ ମଣ୍ଡଳ ମଧ୍ୟରେ ଅସଂଖ୍ୟ ସାଧୁ ଓ ସନ୍ନ୍ୟାସୀ ଅଛନ୍ତି । ସେମାନେ ମହିମା ଧର୍ମର ନିୟମ ଅନୁସାରେ ଗୋଟିଏ ରାତି କେବଳ ଗୋଟିଏ ଆଶ୍ରମ ବା ଟୁଙ୍ଗୀରେ ରହିଥା'ନ୍ତି । ତେଣୁ ତାଙ୍କୁ ପ୍ରତିଦିନ ସ୍ଥାନ ପରିବର୍ତ୍ତନ କରିବାକୁ ପଡ଼ିଥାଏ।

## ଆଶ୍ରମ ମଣ୍ଡଳରେ ଥିବା ଚୌପାଢ଼ି ଓ ଟୁଙ୍ଗୀ

୧. ପୂର୍ବାଞ୍ଚଳ ବାବାଂକର ୨ଟି ଟୁଙ୍ଗୀ
ଚୌପାଢ଼ି - ୯ଟି ।

୨. ଉତ୍ତରାଞ୍ଚଳ ବାବାଂକର ଗୋଟିଏ ଟୁଙ୍ଗୀ
ଚୌପାଢ଼ି - ୫ଟି ।

୩. ପଶ୍ଚିମାଞ୍ଚଳ ବାବାଂକ - ଗୋଟିଏ ଟୁଙ୍ଗୀ
ଚୌପାଢ଼ି - ୫ଟି ।

୪. ଦକ୍ଷିଣାଞ୍ଚଳ ବାବାଂକର - ଗୋଟିଏ ଟୁଙ୍ଗୀ
ଚୌପାଢ଼ି - ୫ଟି ।

୫. ଦକ୍ଷିଣାଞ୍ଚଳ ବାବାଂକର - ଦୁଇଟି ଟୁଙ୍ଗୀ
ଚୌପାଢ଼ି - ୧୬ଟି ।

୬. ସମାଜଦ୍ୱାରା ପରିଚ୍ାଳିତ - ଦୁଇଟି ଟୁଙ୍ଗୀ
ଏହା ସମସ୍ତଙ୍କ ପାଇଁ ମୁକ୍ତ ରହେ ।

୭. ପାଟଣା ଆଶ୍ରମ - ଦୁଇଟି ଟୁଙ୍ଗୀ
ଚୌପାଢ଼ି - ୫ଟି ଓ ୯୯ ବଖରା ଧର୍ମଶାଳା ରହିଛି । ଟୁଙ୍ଗୀମାନଙ୍କରେ ବଲ୍କଲଧାରୀ ବାବାମାନେ ଏବଂ ଚୌପାଢ଼ୀରେ କୌପୁନୀଧାରୀ ଓ ବୈରାଗୀ ଭକ୍ତମାନେ ରହନ୍ତି ।

## ନାଟିମା ଆଶ୍ରମ :

ଏଥିରେ ବାବାମାନେ ରାତ୍ର ରହଣି ବଦଳାଇ ଥାଆନ୍ତି । ଏଠାରେ ଆଠଟି ଚୌପାଢ଼ି ଓ ଚ୍ାରିଟି ଟୁଙ୍ଗୀ ରହିଛି ।

ଆଶ୍ରମ ମଣ୍ଡଳରେ ଥିବା ଗ୍ରନ୍ଥ କୋଷରେ ଧର୍ମ ପୁସ୍ତକ, ବେଦ, ବେଦାନ୍ତ, ସ୍ମୃତି, ଉପନିଷଦ, ବିଭିନ୍ନ ଶାସ୍ତ୍ର ପୁରାଣ ଓ ମହିମା ଧର୍ମ ସଂପର୍କରେ ଅସଂଖ୍ୟ ପୁସ୍ତକ ଗଚ୍ଛିତ ରହିଛି । ଗବେଷକମାନଙ୍କ ପାଇଁ ଏହା ଏକ ଅମୂଲ୍ୟ ଭଣ୍ଡାର ଅଟେ ।

ଆଶ୍ରମ ମଣ୍ଡଳ ଭିତରେ ଥିବା ଅତିଥି ଭବନଟି ଦକ୍ଷିଣଦ୍ୱାର ନିକଟରେ ଅବସ୍ଥିତ । ଗବେଷକ ଓ ଅତିଥି ତଥା ବାହାରୁ ଆସିଥିବା ବିଭିନ୍ନ ପଦାଧିକାରୀଙ୍କ ପାଇଁ ଏହା ଖୋଲା ରହେ ।

'ସଭା ଭବନ' ନାମକ ଲାଲ କୋଠାରେ ଜରୁରୀ କାଳୀନ ବୈଠକ ବସେ । ଏଠାରେ ଗ୍ରହଣ କରା ଯାଇଥିବା ସିଦ୍ଧାନ୍ତକୁ ମହିମା ଧର୍ମୀ ମାନେ ମାନି ନିଅନ୍ତି ।

ଆଶ୍ରମ ମଣ୍ଡଳସ୍ଥିତ ଦୁଇଟି ଭିକ୍ଷା ଭଣ୍ଡାରରେ ଖାଦ୍ୟ ଉପକରଣ ରଖାଯାଇଛି। ଭିକ୍ଷା ଭଣ୍ଡାର ଦୁଇଟି ଭାଗରେ ବିଭକ୍ତ। ଏଠାରେ ଏକ କାଳୀନ ୩୦୦ ସାଧୁ ଭିକ୍ଷା ଗ୍ରହଣ କରି ପାରନ୍ତି । ପ୍ରଭୁଙ୍କ ଭିକ୍ଷା ଭଣ୍ଡାରରେ ଅନ୍ୟ ସାଧୁ ଓ ଭକ୍ତମାନେ ଭିକ୍ଷା ଗ୍ରହଣ କରିଥାନ୍ତି ।

ମହିମା ପ୍ରଭୁଙ୍କ ଆଶ୍ରମ ମଣ୍ଡଳ ବ୍ୟତୀତ ଯୋରନ୍ଦା ଗ୍ରାମ ଶେଷମୁଣ୍ଡରେ ନାଟିମା ବକାରକୁ ଲାଗି ଲତା ଆଶ୍ରମ ରହିଛି । ଏଥିରେ ମଧ୍ୟ ମହିମା ସମାଜଭୁକ୍ତ ସାଧୁ ସନ୍ନ୍ୟାସୀମାନେ ଅବସ୍ଥାନ କରନ୍ତି ।

## ଜଟିଆ ବାବା ଆଶ୍ରମ :

ନାଟିମା ଗ୍ରାମସ୍ଥ ଜଟିଆ ବାବାଂକ ଦ୍ୱାରା ପ୍ରତିଷ୍ଠିତ ଆଶ୍ରମରେ ୩ଟି ଟୁଙ୍ଗୀ ଓ ୫ଟି ଚୌପାଢ଼ି ଓ ଧର୍ମଶାଳା ରହିଛି। ଏହି ଆଶ୍ରମରେ ସାଧୁ ସନ୍ନ୍ୟାସୀମାନେ ତଥା ଭକ୍ତମାନେ ବିଶ୍ରାମ ନେଇଥାନ୍ତି । ଆଶ୍ରମ ମଧ୍ୟରେ ଏକ ସୁନ୍ଦର ସଭା ମଣ୍ଡପ ରହିଛି । ମାଘମେଳା ସମୟରେ ଏଥିରେ ସାଧୁ ସନ୍ନ୍ୟାସୀ ଭକ୍ତମାନଙ୍କର ବୈଠକ ବସେ ।

## ତାଳମୂଳ ମଠ :

ଏହି ମଠଟି କାଶିନାଥ ବାବା ଓ ବୈତାଗ୍ରୀ ବାବା ପ୍ରମୁଖ ବାବାମାନଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇଛି । ଏଥିରେ ଗୋଟିଏ ଟୁଙ୍ଗୀ, ୫ଟି ଚୌପାଢ଼ି ଓ ଧର୍ମଶାଳାମାନ ରହିଛି । ମାଘମେଳା ଅବସରରେ ଭକ୍ତମାନେ ଏଠାରେ ବିଶ୍ରାମ ନେଇଥା'ନ୍ତି ।

## ଜାମ୍ବୁସରା ମଠ :

ଏହି ମଠ ତାରକ ବାବା ଓ ନିରାକାର ବାବାଂକ ଦ୍ୱାରା ପ୍ରତିଷ୍ଠା କରାଯାଇଛି। ନିକଟରେ ଏକ ସୁଦୃଶ୍ୟ ପ୍ରବେଶ ଦ୍ୱାର ନିର୍ମାଣ କରାଯାଇଛି । ଏଥିରେ ଗୋଟିଏ ଟୁଙ୍ଗୀ ଚୌପାଢ଼ି ଓ ଧର୍ମଶାଳା ରହିଛି ।

## ଚକ୍ରଧର ବାବା ମଠ :

ମହିମା କଲେଜ ନିକଟରେ ଅବସ୍ଥିତ ଏହି ମଠରେ ଗୋଟିଏ ଟୁଙ୍ଗୀ, ଚୌପାଢ଼ି ଓ ଧର୍ମଶାଳା ରହିଛି ।

## ସିଦ୍ଧ ବଡ଼ କୃପାସିନ୍ଧୁ ବାବାଂକ ଦ୍ୱାରା ପ୍ରତିଷ୍ଠିତ ଆଶ୍ରମ ମଣ୍ଡଳ

ମହିମା ସ୍ୱାମୀଙ୍କର ୬୪ ସିଦ୍ଧ ସନ୍ନ୍ୟାସୀମାନଙ୍କ ମଧ୍ୟରୁ ତୃତୀୟ ସିଦ୍ଧ ଶିଷ୍ୟ ବଡ଼ କୃପାସିନ୍ଧୁ ବାବା ଏବଂ ତାଂକର ପଞ୍ଚଶିଷ୍ୟମାନଙ୍କ ଦ୍ୱାରା ନିର୍ମିତ ଆଶ୍ରମ ମଣ୍ଡଳଟି ଗାଦି ମନ୍ଦିର ସମ୍ମୁଖରେ ଅବସ୍ଥିତ ।

ଏହି ଆଶ୍ରମ ମଣ୍ଡଳ ପରିସର ମଧ୍ୟରେ ଏକ ସୁଦୃଶ୍ୟ ସଭା ମଣ୍ଡପ ୧୯୫୨ ମସିହାରେ ନିର୍ମାଣ କରାଯାଇଛି । ଏଥିରେ ମହିମା ଧର୍ମର ସମସ୍ତ ପ୍ରକାର ଧର୍ମୀୟ ଆଲୋଚ଼ନା ଓ ବୈଠକ ହୁଏ । ପ୍ରତିବର୍ଷ ମାଘମେଳା ଅବସରରେ ବିଭିନ୍ନ ସ୍ଥାନରୁ ଆସିଥିବା ସାଧୁ ସନ୍ନ୍ୟାସୀମାନେ ଏହି ସଭା ମଣ୍ଡପରେ ଏକତ୍ର ହୋଇ ବିଚ଼ାର ବିମର୍ଶ କରିଥା'ନ୍ତି । ପରିଚ଼ାଳନା କମିଟି ମଧ୍ୟ ଗଠନ କରିଥା'ନ୍ତି ।

ଏହି ଆଶ୍ରମ ମଣ୍ଡଳ ମଧ୍ୟରେ ୬ଟି ଟୁଙ୍ଗୀ ଓ ୫ଟି ଚୌପାଢ଼ି ଓ ଅନେକଗୁଡ଼ିଏ ଧର୍ମଶାଳା ରହିଛି । ଭଣ୍ଡାର ଗୃହ, ଭିକ୍ଷା ମଣ୍ଡପ, ଭିକ୍ଷା ଭଣ୍ଡାର, ରାଜକିଶୋର ବାବା ଇଂରାଜୀ ମାଧ୍ୟମ ବିଦ୍ୟାଳୟ, ଗ୍ରନ୍ଥାଳୟ ଓ ମଣ୍ଡଳ କାର୍ଯ୍ୟାଳୟ ଅବସ୍ଥିତ ।

ଟୁଙ୍ଗୀ ଗୁଡ଼ିକରେ ସନ୍ନ୍ୟାସୀମାନେ ରହି ଆଶ୍ରମ ପରିଚ଼ାଳନା କରି ଥାଆନ୍ତି । ସେହିପରି ଚୌପାଢ଼ି ଗୁଡ଼ିକରେ ସହକର୍ମୀମାନେ ଅବସ୍ଥାନ କରନ୍ତି । ଭକ୍ତ ଓ ଯାତ୍ରୀମାନେ ଧର୍ମଶାଳାରେ ବିଶ୍ରାମ ନେଇଥାଆନ୍ତି । ଏମାନେ ଉପାସନା ପୀଠମାନଙ୍କର ନୀତି ସେବାରେ ନିୟୋଜିତ ଥାଆନ୍ତି ।

ଆଶ୍ରମ ମଣ୍ଡଳରେ ଥିବା ଭଣ୍ଡାର ଗୃହରେ ମହିମା ଗାଦି ଓ ଆଶ୍ରମ ମଣ୍ଡଳର ପରିଚ଼ାଳନା ନିମନ୍ତେ ସମସ୍ତ ପ୍ରକାର ନୀତି ଉପକରଣ ଓ ଖାଦ୍ୟ ଦ୍ରବ୍ୟ, ରୋଷେଇ ସଂରଜାମ ରଖା ଯାଇଛି । ଜଣେ କୋଷାଧ୍ୟକ୍ଷଙ୍କ ତତ୍ତ୍ୱାବଧାନରେ ଏହି ଭଣ୍ଡାର ଗୃହ ପରିଚ଼ାଳିତ ହୁଏ ।

ଏଠାରେ ଥିବା ଭିକ୍ଷା ମଣ୍ଡପରେ ଏକସଂଗେ ପ୍ରାୟ ୨୦୦ ସାଧୁ ସନ୍ନ୍ୟାସୀ ଏଠାରେ ଭିକ୍ଷା ଗ୍ରହଣ କରି ପାରନ୍ତି ।

ମହିମା ଧର୍ମରେ ରୋଷେଇଶାଳକୁ ଭିକ୍ଷା ଭଣ୍ଡାର ନାମରେ ନାମିତ କରାଯାଇଥାଏ । ଏଥିରେ ସମସ୍ତ ସାଧୁ ସନ୍ନ୍ୟାସୀ ଓ ଭକ୍ତ ତଥା ଆଗନ୍ତୁକ ଅତିଥିମାନଙ୍କ ଉଦ୍ଦେଶ୍ୟରେ ଭିକ୍ଷା ପ୍ରସ୍ତୁତ କରାଯାଏ ।

ପ୍ରାୟ ୧୫୦ଜଣ ଶିଶୁ ଛାତ୍ରଛାତ୍ରୀ ରାଜକିଶୋର ବାବା ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ଅଧ୍ୟୟନ କରନ୍ତି । ଏହା ୨୦୦୦ ମସିହାରୁ ପ୍ରତିଷ୍ଠା କରା ଯାଇଛି ।

ଆଶ୍ରମ ମଣ୍ଡଳ ପରିସରରେ ଥିବା ଗ୍ରନ୍ଥାଳୟରେ ବିଭିନ୍ନ ଧର୍ମ ପୁସ୍ତକ ସମେତ ଭୀମ ଭୋଇଙ୍କ ରଚ଼ିତ ସମସ୍ତ ଗ୍ରନ୍ଥ ଗଚ୍ଛିତ ରହିଛି । ମହିମା ଧର୍ମ ସଂପର୍କରେ ସମସ୍ତ ଗ୍ରନ୍ଥ ମଧ୍ୟ ସଂରକ୍ଷିତ କରି ରଖାଯାଇଛି । ଗବେଷକ ଓ ପାଠକମାନଙ୍କ ଉଦ୍ଦେଶ୍ୟରେ ଏହା ଖୋଲା ରହେ ।

ଆଶ୍ରମ ମଣ୍ଡଳର କାର୍ଯ୍ୟାଳୟ ଦ୍ୱାରା ସମସ୍ତ କାଗଜ ପତ୍ର ସଂପାଦକଙ୍କ ଦ୍ୱାରା ପରିଚ଼ାଳିତ ହୋଇଥାଏ ।

## ମହିମାଜ୍ୟୋତି :

କୌପୀନଧାରୀ ମହିମା ସମାଜ ତରଫରୁ ୧୯୯୪ ମସିହାରୁ "ମହିମା ଜ୍ୟୋତି" ନାମକ ଏକ ତ୍ରୈମାସିକ ପତ୍ରିକା ନିୟମିତ ପ୍ରକାଶ ପାଇ ଆସୁଛି । ମହିମା ଜ୍ୟୋତି ପତ୍ରିକାରେ ମହିମା ଧର୍ମର ବିଭିନ୍ନ ଦିଗ ସଂପର୍କରେ ଆଲୋଚନାମାନ ପ୍ରକାଶ ପାଏ । ବିଭିନ୍ନ ଗୋଷ୍ଠୀର ଲେଖକ ସେମାନଙ୍କର କବିତା, ଗୀତି କବିତା ଓ ଧାର୍ମିକ ଚ଼ିନ୍ତାଧାରାର ଗଳ୍ପମାନ ମଧ୍ୟ ଏଥିରେ ସ୍ଥାନିତ ହୋଇଥାଏ । ଏହାର ପରିଚ଼ାଳନା ଦାୟିତ୍ୱ ସଂପାଦକ ହିଁ ବହନ କରିଥା'ନ୍ତି । ସମଗ୍ର ରାଜ୍ୟରେ ଏହି ପତ୍ରିକା ବେଶ୍ ସୁନାମ ଅର୍ଜନ କରି ପାରିଛି ।

## କ୍ୟାସେଟ :

ମହିମା ଧର୍ମର ପ୍ରଚ଼ାର ପ୍ରସାର ଦିଗରେ ଆଶ୍ରମ ମଣ୍ଡଳ ତରଫରୁ କେତୋଟି ସୁଶ୍ରାବ୍ୟ କ୍ୟାସେଟ୍ ପ୍ରସ୍ତୁତ କରାଯାଇଛି । ଏଥିରେ ମହିମା ସମାଜର ଲେଖକ ଅବିନାଶୀ ବାବା ଓ ବୀଣାକର ବାବା ପ୍ରମୁଖ ସଂଗୀତ ରଚ଼ନା କରି ମହିମା ଧର୍ମର ମହତ୍ୱ ବୃଦ୍ଧିରେ ସହାୟକ ହୋଇଛନ୍ତି । ଓଡ଼ିଶାର ପ୍ରସିଦ୍ଧ କଣ୍ଠଶିଳ୍ପୀଙ୍କ ଦ୍ୱାରା ପରିବେଷିତ ମହିମା ଭଜନ ଗୁଡ଼ିକ ବେଶ୍ ଆଦୃତ ଲାଭ କରିଅଛି ।



ସଭା ମଣ୍ଡପ



# ଖଲିଆ ପାଲି : ମହିମା ପୀଠ

ମହିମା ଧର୍ମର ପ୍ରଚାରକ ତଥା ମହାକବି ସନ୍ଥ ଭୀମ ଭୋଇ ସାହିତ୍ୟ, ସଂଗୀତ ଓ ଭଜନ-ଜଣାଣ ମାଧ୍ୟମରେ ମହିମା ଧର୍ମର ସାରତତ୍ତ୍ୱ ଓ ଦର୍ଶନକୁ ଜନସାଧାରଣଙ୍କ ନିକଟରେ ଲୋକପ୍ରିୟ କରାଇ ପାରିଥିଲେ। ଆଧ୍ୟାତ୍ମିକ ଅନୁଗତା, ପୁତ୍ର, ଦୁହିତା, ଶିଷ୍ୟ, ଭକ୍ତ ଓ ସାଧୁ ସନ୍ନ୍ୟାସିନୀମାନଙ୍କ ଗହଣରେ ସେ ଆଧ୍ୟାତ୍ମିକ ଚିନ୍ତନରେ ଜୀବନ ଅତିବାହିତ କରୁଥିଲେ ।

୧୮୯୫ ମସିହା ଶିବରାତ୍ରିର ଏକ ଶୁଭ ସକାଳରେ ସେ ଇହଲୀଳା ସାଂଗ କଲେ। ତାଂକର ଦାୟାଦମାନେ ଭୀମ ଭୋଇଙ୍କ ପଥ ଅନୁସରଣ କରିଥିଲେ। ପରବର୍ତ୍ତୀ କାଳରେ ସୋନପୁରର ଖଲିଆ ପାଲି ଠାରେ ଏମାନଙ୍କର ସମାଧି ମନ୍ଦିର ଗଢ଼ି ଉଠିଛି। ସଦର ମହକୁମା ଠାରୁ କୋଡ଼ିଏ କି.ମି ଦୂର ଖଲିଆ ପାଲିରେ ଏହି ସମାଧି ସମୂହ "ସମାଧି ପୀଠ" ଭାବେ ପରିଚିତ ହୋଇଛି। ବୃହତ ସମାଧି ମନ୍ଦିର

ସମ୍ମୁଖରେ ଛଅଗୋଟି ଛୋଟ ଛୋଟ ସମାଧି ମନ୍ଦିର ଏବଂ ଚାରି ପାଖରେ ରହିଛି- ପାଦୁକା ମନ୍ଦିର, ଭଜନ ମଣ୍ଡପ, ତେତ୍ରିଶ କୋଟି ଦେବଦେବୀଂକ ପଣା ମନ୍ଦିର, ସପ୍ତପୀଢ଼ ବେଦିର ସ୍ମୃତି, ରୋଷଘର ଓ ଭଣ୍ଡାର ଘର ।

ସାଧୁସନ୍ଥ ଓ ଭକ୍ତମାନଙ୍କ ଗହଣରେ ଥାଇ ଭୀମ ଭୋଇ ଇହଲୀଳା ଭଂଗ କରି "ଅଲେଖ ଭୁବନକୁ"ଯିବା ପାଇଁ ତାଂକୁ ଡ଼ାକରା ଆସିଛି ବୋଲି ଜଣାଇଲେ । ପୂର୍ବମୁଖ ହୋଇ ଯୋଗାସନରେ ବସି ସେ ପିଣ୍ଡରୁ ପ୍ରାଣ ଛାଡ଼ିଦେଲେ। ସେ ଯେଉଁ ସ୍ଥାନରେ ବସି ପ୍ରାଣ ଛାଡ଼ିଥିଲେ, ସେହି ସ୍ଥାନରେ ତାଂକର ସମାଧି ମନ୍ଦିର ଗଢ଼ା ଯାଇଛି। ୧୮୯୭ ମସିହାରେ ଭକ୍ତ ହରିପଣ୍ଡା ଓ ବସୁଦେବ ପଣ୍ଡାଙ୍କ ଦ୍ୱାରା ୬୪ ଫୁଟ ଉଚ୍ଚତା ବିଶିଷ୍ଟ ମୁଖ୍ୟ ମନ୍ଦିର, ୪୦ ଫୁଟ ଉଚ୍ଚତା ବିଶିଷ୍ଟ ନାଦଗୃହ ଏବଂ ୨୫ ଫୁଟ ବିଶିଷ୍ଟ ମୁଖଶାଳା ନିର୍ମାଣ କରାଯାଇଥିଲା। ଏହାର ୩ ଫୁଟ ବ୍ୟବଧାନରେ ଏକ ସୁନ୍ଦର ବେଢ଼ା ନିର୍ମାଣ କରାଗଲା ।

୧୯୧୧ ମସିହାରେ ଭୀମ ଭୋଇଙ୍କର ଆଧ୍ୟାତ୍ମିକ ସଂଗିନୀ ମାଆ ଅନ୍ନପୂର୍ଣ୍ଣାଙ୍କର ଦେହାବସାନ ଘଟିଲା। ଭୀମ ଭୋଇଙ୍କ ସମାଧି ବାମ ପାର୍ଶ୍ୱରେ ତାଂକର ମଧ୍ୟ ସମାଧି ନିର୍ମାଣ କରାଯାଇଛି ।

ଅନ୍ନପୂର୍ଣ୍ଣାଦେବୀ ମହିମା ଧର୍ମର ପ୍ରଚାର ପ୍ରସାର ଦିଗରେ ନାରୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟା ଥିଲେ । ତେଣୁ ଭକ୍ତମାନେ ତାଂକୁ ଗୁରୁମା ହିସାବରେ ମାନ୍ୟ ଓ ସମ୍ବୋଧନ କରୁଥିଲେ ।

ମୁଖ୍ୟ ମନ୍ଦିରକୁ ଲାଗି ସୁମେଧା ଓ ରୋହିଣୀଙ୍କ ସମାଧି ରହିଛି । ସୁମେଧା ଥିଲେ, ଭୀମ ଭୋଇଙ୍କର ଦ୍ୱିତୀୟ ଅନୁଗତା। କପିଳେଶ୍ୱର ବାବୁ ତାଂକରି ଗର୍ଭରୁ ଜନ୍ମଲାଭ କରିଥିଲେ ।

ଅନୁଗତା ରୋହିଣୀଙ୍କ ଗର୍ଭରୁ ଲାବଣ୍ୟବତୀ ଜନ୍ମ ଗ୍ରହଣ କରିଥିଲେ। ଅନ୍ୟ ଦୁଇଜଣ ଅନୁଗତା ସୁବର୍ଣ୍ଣ ଓ ସରସ୍ୱତୀଙ୍କ ସମାଧି ମଧ୍ୟ ଏହି ପୀଠର ଜମି ଉପରେ ବିଦ୍ୟମାନ । ସମାଧି ମନ୍ଦିର ଗୁଡ଼ିକୁ ଭକ୍ତମାନେ ଅତ୍ୟନ୍ତ ଶ୍ରଦ୍ଧାର ସହିତ ସମ୍ମାନ ପ୍ରଦାନ କରିଥାʼନ୍ତି।

**ପାଦୁକା ମନ୍ଦିର :-** ପାଦୁକା ମନ୍ଦିରକୁ କେତେକ ନୀତିମନ୍ଦିର କହନ୍ତି । ଏଠାରେ ଭୀମଭୋଇ ଓ ଅନ୍ନପୂର୍ଣ୍ଣା ଦେବୀଙ୍କ କଠାଉ ଉପରେ ରୂପା ଆବରଣ ଦିଆଯାଇ ରଖାଯାଇଛି । ପ୍ରତ୍ୟହ ପ୍ରାତଃ ୪ଟା ଓ ସଂଧ୍ୟା ୬ଟା ସମୟରେ ସପ୍ତାମୃତରେ ଏହି କଠାଉକୁ ପ୍ରକ୍ଷାଳନ କରାଯାଏ ।

**ପଣା ମନ୍ଦିର :-** ପାଦୁକା ମନ୍ଦିର ପଛପଟେ ଡ଼ାହାଣକୁ ତେତ୍ରିଶ କୋଟି ଦେବଦେବୀଙ୍କ ପଣା ମନ୍ଦିର ରହିଛି । ପ୍ରତ୍ୟେକ ଶୁକ୍ଳ ଚ଼ତୁର୍ଦ୍ଦଶୀ ଦିନ ଏଠାରେ ପଣା ଢ଼ଳାଯାଏ । ଏହି ନୀତି ଭୀମ ଭୋଇଙ୍କ ଜୀବିତାବସ୍ଥାରୁ ପ୍ରଚ଼ଳିତ ହୋଇ ଆସୁଛି । ଏଠାକାର ମନୋରମ ବଗିଚ଼ା ଅବଶ୍ୟ ଉପଭୋଗ୍ୟ । ସଂପ୍ରତି ଖଲିଆ ପାଲିର ସମାଧି ପୀଠ ଏକ ତୀର୍ଥରେ ପରିଣତ ହୋଇଯାଇଛି । ଅସଂଖ୍ୟ ଦର୍ଶକ, ଭକ୍ତ ଓ ମହିମାଧର୍ମୀ ସେହି ପୀଠ ପରିଦର୍ଶନ କରି ଆତ୍ମ ସନ୍ତୋଷ ଲାଭ କରି ଚ଼ାଲିଛନ୍ତି ।



# ମହିମା ଧର୍ମର ଗ୍ରନ୍ଥରାଜି

୧. ସନ୍ଥକବି ଭୀମଭୋଇ ହେଉଛନ୍ତି, ମହିମା ଧର୍ମର ଆଦ୍ୟ ସାରସ୍ୱତ କବି । ତାଙ୍କର ରଚ଼ନାବଳୀ ମହିମା ଧର୍ମର ଦର୍ଶନ ଉପରେ ବିଶେଷ ଆଲୋକପାତ କରେ । ଭୀମଭୋଇଙ୍କ ଉଲ୍ଲେଖନୀୟ ରଚ଼ନାମାନ ହେଉଛି ସ୍ତୁତି ଚ଼ିନ୍ତାମଣି, ବ୍ରହ୍ମ ନିରୂପଣ ଗୀତା, ଭଜନମାଳା, ଅଷ୍ଟକବିହାରୀ ଗୀତା, ଆଦିଅନ୍ତ ଗୀତା, ଶ୍ରୁତି ନିଷେଧ ଗୀତା ଓ ଚ଼ଉତିଶା ଗ୍ରନ୍ଥମାଳା । କବିଙ୍କର ମହିମା ବିନୋଦ ଗ୍ରନ୍ଥଟି ଅପ୍ରକାଶିତ ।

୨. ଭକ୍ତ ନାରାୟଣ ସାହୁ "ନାରଣ ଭଜନମାଳା" ଓ "ଶୂନ୍ୟ ରାହାସ" ରଚ଼ନା କରି ଖ୍ୟାତି ଅର୍ଜନ କରିଛନ୍ତି ।

୩. ଭକ୍ତ ଜୟକୃଷ୍ଣ ପ୍ରଧାନଙ୍କ "ଜୟକୃଷ୍ଣ ଭଜନମାଳା" ଓ "ମୁକ୍ତି ଗୀତା" ଦୁଇଟି ଉପାଦେୟ ଗ୍ରନ୍ଥ ।

୪. ବହ୍ମଲୀନ ମହିମା ସନ୍ନ୍ୟାସୀ ବିଶ୍ୱନାଥ ବାବା ବହୁ ଉପାଦେୟ ଗ୍ରନ୍ଥ ରଚ଼ନା କରି ମହିମାଧର୍ମର ଦର୍ଶନ ଓ ଇତିହାସକୁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ପହଞ୍ଚାଇ ପାରିଛନ୍ତି । ବାବା ମହୋଦୟଙ୍କର ଉଲ୍ଲେଖନୀୟ ଗ୍ରନ୍ଥଗୁଡ଼ିକ ହେଉଛି - ସତ୍ୟ ମହିମା ଧର୍ମ ପ୍ରତିପାଦକ, ସତ୍ୟ ମହିମା ଧର୍ମ ଇତିହାସ, ଭଗବତ ସାର ସତ୍ୟଧର୍ମ, ଶ୍ରୀମତ୍ ଚ଼ିନ୍ମୟ ବ୍ରହ୍ମ ଗୀତା, ସାଧୁ ଗୀତି, ତାତମାତ ଗୀତି, ମହିମା ବାଲ୍ୟଲୀଳା ଗୀତି, ସତ୍ୟ ମହିମା ଧର୍ମ ସିଦ୍ଧସାଧୁ ଚ଼ରିତାମୃତ, ସତ୍ୟ ମହିମା ଧର୍ମ, ତତ୍ତ୍ୱସାର, ସତ୍ୟ ମହିମାଧର୍ମ ସ୍ୱରୂପ, ସତ୍ୟ ମହିମା ଧର୍ମ ପ୍ରଦୀପ, ସତ୍ୟ ମହିମା ଧର୍ମ ପରିଚ଼ୟ, ସତ୍ୟ ମହିମା ଧର୍ମ ଦର୍ଶନ ତତ୍ତ୍ୱ, ସତ୍ୟ ମହିମା ଧର୍ମ ସଚ଼େତ ବାଣୀ, ସର୍ବ ବେଦବେଦାନ୍ତ ସାରତତ୍ତ୍ୱ ଶିରୋମଣି ଅଲେଖ ପରଂବ୍ରହ୍ମ ଦର୍ଶନମ୍

(ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ) (ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ) । ଏଥିରୁ ଅନେକ ଗ୍ରନ୍ଥ ଇଂରାଜୀ, ବଙ୍ଗଳା ଓ ହିନ୍ଦୀରେ ଅନୁବାଦ କରାଯାଇଛି ।

୫. ସନ୍ନ୍ୟାସୀ ଶ୍ରୀମତ୍ ମହୀନ୍ଦ୍ର ବାବା ବିଶ୍ୱ ଧର୍ମ ସମ୍ମିଳନୀରେ ମହିମାଧର୍ମକୁ ପ୍ରତିଧ୍ୱନିତ କରି "ବିଶ୍ୱ କଲ୍ୟାଣ ପଥେ ସତ୍ୟ ମହିମା ଧର୍ମ" ଶୀର୍ଷକ ନିବନ୍ଧ ପାଠ କରିଥିଲେ । (୧୯୫୭ରେ ନୂଆଦିଲ୍ଲୀ ଠାରେ) । ବାବାଙ୍କର ପୁସ୍ତକମାନ ହେଉଛି ମହୀନ୍ଦ୍ର ଭଜନମାଳା, ତତ୍ତ୍ୱମାଳା, ମହୀନ୍ଦ୍ର ଗୀତି, ମହିମା କଳ୍ପତରୁ, ମହିମା କୀର୍ତ୍ତନ ଓ ସତ୍ୟ ମହିମା ଧର୍ମର ସଂକ୍ଷିପ୍ତ ଇତିହାସ ।

୬. ଶ୍ରୀମତ୍ କ୍ଷେତ୍ରବାସୀ ବାବାଙ୍କର ଗୁରୁ ଆଜ୍ଞା, ତତ୍ତ୍ୱସାର ବୈଜୟନ୍ତୀ ଓ ପ୍ରବୁଦ୍ଧ ପୁରାଣ ।

୭. ପଶ୍ଚିମାଞ୍ଚଳ ମହିମା ସନ୍ନ୍ୟାସୀ ଶ୍ରୀମତ୍ ଅନନ୍ତରାମ ବାବାଙ୍କର ଅନନ୍ତରାମ ଭଜନମାଳା, ମହିମା ଲୀଳା ପ୍ରକାଶ, ନଚିକେତା ଉପାଖ୍ୟାନ, ମାନସ ତୀର୍ଥ ଓ ଗୁରୁ ଆଜ୍ଞା ପ୍ରଭା, ଅଲେଖ ମହିମା ଦର୍ଶନ ତତ୍ତ୍ୱ, ଆଠ ଭଜନ ତତ୍ତ୍ୱରହସ୍ୟ, ବ୍ରହ୍ମବିଦ୍ୟା ପ୍ରଶ୍ନୋତ୍ତରୀ ଓ ନୀତି ରତ୍ନ ଶ୍ଳୋକାବନ୍ଦୀ ।

୮. ସିଦ୍ଧ କୌପୀନଧାରୀ ସନ୍ନ୍ୟାସୀ ଗଙ୍ଗାଧର ବାବାଙ୍କର ଭଜନମାଳା ଓ ମହିମା ସଂହିତା ।

୯. ପ୍ରଫେସର ଚିତ୍ତରଂଜନ ଦାସ- ଓଡ଼ିଶାର ମହିମାଧର୍ମ ।

୧୦. ପ୍ରଫେସର ଶତ୍ରୁଘ୍ନ ନାଥ - ଭକ୍ତ ଭୀମଭୋଇ ମହିମା ଧର୍ମ ଧାରା (English), ବିଶ୍ୱନାଥ ବାବା (English), ପିଲାଙ୍କ ବ୍ରହ୍ମଜ୍ଞାନ ।

୧୧. Modern Buddism and its followers in Orissa - N.N. Basu.

୧୨. Mahima Dharma Darshan-1972- Published by

Sankar Philosophy Association, D.A.V. College, Koraput.

୧୩. Satya Mahima Dharma - Nilamani Senapati

୧୪. Mahima Dharma - A. Eschmann.

୧୫. Spread, organisation and cult of Mahima Dharma in Mahima Dharma Darshan. D.A.V. College, Koraput by A. Eschmann.

୧୬. ଶ୍ରୀମତ୍ ରାଜକିଶୋର ବାବା - ମହିମା ଗାଦି ମହିମା ଧାମ ସଂକ୍ଷିପ୍ତ ଇତିହାସ।

୧୭. ଭକ୍ତ ନାକମୁଦିଆ ପାଲ - ଅଲେଖ ପୁରାଣ, କୌପୀନ ଧାରୀ ସମାଜ ଇତିହାସ, ଗୁପ୍ତଗୀତା।

ଏତଦ୍ ବ୍ୟତୀତ କବି ଖଗଦାସ, କାଳୁଦାସ, ମଧୁଦାସ ଓ ନରେନ୍ଦ୍ର ପ୍ରଧାନ ପ୍ରମୁଖ ଅନେକ ମହିମା ସନ୍ନ୍ୟାସୀ, ଗବେଷକ ଓ ବୁଦ୍ଧିଜୀବୀ ଗଣ ମହିମା ଧର୍ମ ସଂପର୍କରେ ଉପାଦେୟ ଗ୍ରନ୍ଥମାନ ରଚନା କରି, ଏହି ଧର୍ମର ଇତିହାସ ଓ ଦର୍ଶନକୁ ବର୍ଣ୍ଣନା କରିଛନ୍ତି ।



ଯୋରନ୍ଦାର ଧୁନି ମନ୍ଦିର



# ଯୋରନ୍ଦାର ମହିମା ମେଳା

ମହିମା ସଂସ୍କୃତିରେ ମହିମା ମେଳା ହେଉଛି, ଏକ ବିରାଟ ପରମ୍ପରା । ମହିମା ଧର୍ମର ପ୍ରତିଷ୍ଠାତା ମହିମା ସ୍ୱାମୀଙ୍କ ନିର୍ଦ୍ଦେଶରେ ଏହି ମେଳାର ଶୁଭାରମ୍ଭ ହୋଇ ଏହା ଏକ ବାର୍ଷିକ ନିୟମିତ ମେଳାରେ ପରିଣତ ହୋଇଯାଇଛି । ଏହାକୁ ମାଘମେଳା ବା ଯୋରନ୍ଦା ମେଳା ନାମରେ ଭକ୍ତମାନେ ନାମିତ କରିଥା'ନ୍ତି । ୧୮୭୬ ମସିହାରେ ମହିମା ସ୍ୱାମୀ ମହାସମାଧି ଗ୍ରହଣ କରିବା ପରେ ଯୋରନ୍ଦାର ମହିମା ପୀଠ ମହିମା ଗାଦି ହିସାବରେ ସର୍ବମାନ୍ୟ ହୋଇଯାଇଛି । ୧୮୭୪ ମସିହାରେ ମହିମା ସ୍ୱାମୀ ଯୋରନ୍ଦା ଆଗମନ କରି ମାଘମାସ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ସ୍ଥାନୀୟ ଜନସାଧାରଣ ଓ ସମବେତ ଭକ୍ତମାନଙ୍କ ସହାୟତାରେ ବିଶ୍ୱ କଲ୍ୟାଣ ନିମନ୍ତେ ଅଖଣ୍ଡ ବ୍ରହ୍ମଧୂନି ସ୍ଥାପନ କରିଥିଲେ । ତା'ପରେ ସେ ମହିମା ଦର୍ଶନ ସଂପର୍କରେ ଭକ୍ତ ଓ ଜନସାଧାରଣଙ୍କୁ ଉପଦେଶ ପ୍ରଦାନ କରିଥିଲେ । ସେ କହିଥିଲେ, ବର୍ତ୍ତମାନ ଯୋରନ୍ଦାରେ ଯେଉଁ ଧୂନି ସ୍ଥାପନା କରାଗଲା, ତାହା ଯୁଗ ଯୁଗକୁ ଅତୁଟ ରହିବ । ଏହି ଗ୍ରାମରେ ମହିମା ଗାଦି ସ୍ଥାପିତ ହେବ । ପ୍ରତିବର୍ଷ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ଏଠାରେ ମହିମା ମେଳା ଅନୁଷ୍ଠିତ ହେବ" ।

ମହିମା ସ୍ୱାମୀଙ୍କ ଆଦେଶ ଅନୁସାରେ ପ୍ରତିବର୍ଷ ମାଘମାସ ଶୁକ୍ଳ ତ୍ରୟୋଦଶୀ ରାତ୍ର ଦୁଇଟା ସମୟରୁ ଏହି ମେଳାର ଶୁଭାରମ୍ଭ ହୁଏ । ପୂର୍ଣ୍ଣିମା ଦିନ ଘୃତାହୁତି ପରେ ମେଳାର ପରିସମାପ୍ତି ଘଟେ । କିନ୍ତୁ ପ୍ରକୃତରେ ମେଳା ସାତଦିନ ଧରି ଚାଲେ । ଦୂର ଦୂରାନ୍ତରୁ ଆସୁଥିବା ମହିମା ଧର୍ମୀ ସନ୍ନ୍ୟାସୀ ଓ ଭକ୍ତମାନେ ଏଠାରେ ପରସ୍ପରକୁ ଦର୍ଶନ କରିବାର ସୁଯୋଗ ଲାଭ କରିଥା'ନ୍ତି । ଜନସାଧାରଣ ଓ ଦର୍ଶକମାନଙ୍କର ମନୋରଞ୍ଜନ ଉଦ୍ଦେଶ୍ୟରେ ବିଭିନ୍ନ ଯାତ୍ରାଦଳ, ସିନେମା, ସର୍କସ, ମିନି ଚିଡ଼ିଆଖାନା ଓ ଦୋଳି ପ୍ରଭୃତି ଆସିଥାଏ । ବଂଧୁ ବାନ୍ଧବମାନଙ୍କର ଆଗମନ ଫଳରେ ଭେଟଘାଟ ହୁଏ । ପରସ୍ପର ମିଳନ ସହିତ ନିରାକାର ଶୂନ୍ୟ ବ୍ରହ୍ମଙ୍କ ପୀଠସ୍ଥଳୀରେ ଆତ୍ମା ଓ ପରମାତ୍ମାର ମିଳନ ଘଟେ । ବିଭିନ୍ନ ସ୍ଥାନରୁ ବ୍ୟବସାୟୀମାନେ ଆସି ଏଠାରେ ବିଭିନ୍ନ ପ୍ରକାର ଜିନିଷ କିଣାବିକା କରନ୍ତି । ସ୍ଥାନୀୟ ବାସିନ୍ଦାମାନେ ତାଙ୍କର ଆବଶ୍ୟକ ପଦାର୍ଥକୁ ଏଠାରୁ ସହଜ ଓ ସୁବିଧାରେ କିଣି ନେଇଥା'ନ୍ତି ।

ଏହି ମେଳା ଉପଲକ୍ଷେ ପ୍ରବୁଦ୍ଧ ଗୁରୁ ଯୋଗେଶ୍ୱର ମହିମା ପ୍ରଭୁଙ୍କ ଗାଦି ମନ୍ଦିର, ଅଖଣ୍ଡବତୀ ମନ୍ଦିର, ଅଖଣ୍ଡଜ୍ୟୋତି ମନ୍ଦିରଠାରେ ପିତଳ ଝାଡ଼ ଦୀପରେ ଏବଂ ଗୁରୁ ପୂର୍ଣ୍ଣିମାରେ ଧୂନି ମନ୍ଦିରରେ ଅଲେଖ ମହିମା ବ୍ରହ୍ମମନ୍ତ୍ର ନାମରେ ଘୃତାହୁତି ପ୍ରଦାନ କରାଯାଏ । ହଜାର ହଜାର ଭକ୍ତ ଏହି ଝାଡ଼ରେ ଘୃତାହୁତି ଦେବାପାଇଁ ଦୂର ଦୂରାନ୍ତରୁ ଆସିଥା'ନ୍ତି । ଅସଂଖ୍ୟ ଭକ୍ତ ଓ ଦର୍ଶନ ଏହାକୁ ଦର୍ଶନ କରି ଆନନ୍ଦ ଉପଭୋଗ କରିଥା'ନ୍ତି ।

ଯୋରନ୍ଦାର ମହିମା ମେଳା ଅବସରରେ ମହିମାଗାଦି ଅପରୂପ ଆକର୍ଷଣୀୟ ସୁଷମାରେ ନିମନ୍ତ୍ରିତ ହୁଏ । ରଂଗ ଓ ତରଙ୍ଗର କାରୁକାର୍ଯ୍ୟ ବ୍ୟତୀତ ସାଜସଜ୍ଜା, ବିଚିତ୍ରବର୍ଣ୍ଣା ବିଦ୍ୟୁତ ଆଲୋକମାଳା ମେଳାଟିକୁ ମୁଖରିତ କରିଥାଏ । ଏହି ମେଳା ଉପଲକ୍ଷେ ଗାଦି ମନ୍ଦିର ନିକଟରେ ସୁନା ଓ ରୂପାର ଛତ୍ରୀ, ରୋସ, ଆଡ଼େଣୀ ଚାମର, ତାଳ, ଗଡୁ ଓ ଥାଳୀ ରଖାଯାଇ ଅଖଣ୍ଡ ଦୀପ ବା ଝାଡ଼ ପ୍ରଜ୍ୱଳିତ ହୁଏ । ଭଜନ, କୀର୍ତ୍ତନ, ସର୍ବୋପରି ଖଞ୍ଜଣୀ ଭଜନରେ ମହିମା ଧାମ ପ୍ରକମ୍ପିତ ହୁଏ । ସଭାଗୃହରେ ମହିମାଗାଦିର ସୁପରିଚାଳନା ଉଦ୍ଦେଶ୍ୟରେ ସାଧୁ-ଭକ୍ତ ସଂମ୍ମିଳନୀ ଓ ଧର୍ମାଲୋଚନା ହୁଏ ।

ମହିମା ଧର୍ମର ସନ୍ନ୍ୟାସୀମାନେ ଗୁରୁ ଆଜ୍ଞା ମତେ ବର୍ଷଯାକ ଦେଶସାରା ଭ୍ରମଣ କରି ମହିମା ଧର୍ମର ପ୍ରଚାର ଓ ପ୍ରସାର କରିଥା'ନ୍ତି । ସେମାନେ ଏହି ମେଳା ଅବସରରେ ଯୋରନ୍ଦା ମହିମା ମେଳାରେ ଜୁଣ୍ଡ ହୋଇ ପରସ୍ପର ସହିତ ମିଳିତ ହୋଇ ଅପାର ଆନନ୍ଦ ଲାଭ କରିଥା'ନ୍ତି ।

ବିଭିନ୍ନ କୋଣରୁ ଆସିଥିବା ଭକ୍ତ ଓ ଦର୍ଶନମାନେ ଗାଦି ପରିସରରେ ଥିବା ଧର୍ମଶାଳା, ବିଭିନ୍ନ ବିଦ୍ୟାଳୟ ଓ ବଂଧୁବାନ୍ଧବଙ୍କ ଘରେ ଅବସ୍ଥାନ କରି ମେଳାଟିକୁ ଉପଭୋଗ କରିଥା'ନ୍ତି ।

ଯୋରନ୍ଦାର ମହିମାମେଳା ୧୮୭୬ ମସିହାରୁ ନିରବଛିନ୍ନ ଭାବେ ଆଜିଯାଏ, ମହା ଆଡମ୍ବରରେ ପାଳିତ ହୋଇ ଆସୁଛି । ଏହି ମେଳାର ସୁପରିଚାଳନା ଦାୟିତ୍ୱ ସ୍ଥାନୀୟ ପ୍ରଶାସନ ଗ୍ରହଣ କରିଥାଏ । ଶାନ୍ତି-ଶୃଙ୍ଖଳା, ପାନୀୟ ଜଳ ଯୋଗାଣ, ପରିଷ୍କାର ପରିଚ୍ଛନ୍ନ, ଆଲୋକ, ସ୍ୱାସ୍ଥ୍ୟ ଓ ଗମନାଗମନ ବ୍ୟବସ୍ଥା ସ୍ଥାନୀୟ ପ୍ରଶାସନ ପରିଚାଳନା କରିଥାଏ । ଏଥିପାଇଁ ସ୍ଥାନୀୟ ପଞ୍ଚାୟତ ଦୁଇ ଗୋଷ୍ଠୀର ସନ୍ନ୍ୟାସୀ ଓ ସ୍ଥାନୀୟ ଜନ ସାଧାରଣଙ୍କ ସହାୟତାରେ ନେଇଥାଏ ।

ଖଲିଆପାଲିର ଭୀମଭୋଇଙ୍କ ସାଧନା ପୀଠରେ ମଧ୍ୟ ଏହି ମେଳା ଅନୁଷ୍ଠିତ ହୁଏ । ମୟୂରଭଂଜର ମେରୁମଠ ଓ ଅନ୍ୟାନ୍ୟ ମହିମା ପୀଠରେ ମଧ୍ୟ ମହିମା ମେଳାର ଆୟୋଜନ ହୋଇଥାଏ । କିନ୍ତୁ ଯୋରନ୍ଦାର ମହିମା ମେଳାକୁ ମହିମା ଧର୍ମର ମୁଖ୍ୟ ମେଳା ଭାବେ ଗ୍ରହଣ କରାଯାଏ । ଏହି ମେଳା ଦିବସକୁ ମହିମା ଧର୍ମରେ ଗୁରୁ ପୂର୍ଣ୍ଣିମା ମାଘମେଳା ହିସାବରେ ଗ୍ରହଣ କରାଯାଏ । ଏହି ଦିବସକୁ ମହିମା ସ୍ୱାମୀଙ୍କର ଆବିର୍ଭାବ ଦିବସ ଭାବେ ମଧ୍ୟ ଗ୍ରହଣ କରାଯାଏ ।



